

# ଇଂରେଜି ଉଚ୍ଚାରଣ ଶିକ୍ଷା





ଅଧ୍ୟାପକ
ଗୋଲୋକ ବିହାରୀ ଧଳ

# ଇଂରେଜି ଉଚ୍ଚାରଣ ଶିକ୍ଷା

ଅଧ୍ୟାପକ **ଗୋଲୋକ ବିହାରୀ ଧଳ**, ଏମ୍. ଏ. (ପାଟନା), ଏମ୍.ଏ. (ଲଣ୍ଡନ),
ଡିପ୍-ଇନ୍-ରସିଆନ୍ (ଉତ୍କଳ)

# ଇଂରେଜି ଉଚ୍ଚାରଣ ଶିକ୍ଷା

ଲେଖକ :

ଅଧ୍ୟାପକ **ଗୋଲୋକ ବିହାରୀ ଧଳ**

ଦ୍ୱିତୀୟ ମୁଦ୍ରଣ

୧୯୭୨

ପ୍ରକାଶକ

ସହଦେବ ପ୍ରଧାନ

**ଫ୍ରେଣ୍ଡସ୍ ପବ୍ଲିଶର୍ସ**

ବିନୋଦ ବିହାରୀ

କଟକ—୨

ମୁଦ୍ରାକର :

କ୍ୟାଲକାଟା ବାଇଣ୍ଡିଂ ଏଣ୍ଡ୍ ପ୍ରିଣ୍ଟିଂ ୱାର୍କସ୍

ବାଙ୍କାବଜାର, କଟକ—୨

**ମୂଲ୍ୟ [illegible] ଟଙ୍କା**

# ସୂଚିପତ୍ର

# ପୁସ୍ତକରେ ବ୍ୟବହୃତ କେତେକ ଧ୍ୱନିଲିପି ।

| ଧ୍ୱନିଲିପି | | ସୂଚକ ଶବ୍ଦ | |
|---|---|---|---|
| 1 | ŋ | ring | [ riŋ ] |
| 2 | θ | thing | [ θiŋ ] |
| 3 | ð | that | [ ðæt ] |
| 4 | ʃ | English | [ iŋgliʃ ] |
| 5 | ʒ | pleasure | [ pleʒə ] |
| 6 | ʧ | catch | [ kæʧ ] |
| 7 | ʤ | judge | [ ʤʌʤ ] |
| 8 | ɹ | red | [ red ] |
| 9 | i: | seat | [ si:t ] |
| 10 | æ | Cat | [ kæt ] |
| 11 | ə: | bird | [ bə:d ] |
| 12 | ʌ | Cut | [ kʌt ] |
| 13 | ə | Scotland | [ skɔtlənd ] |
| 14 | ɔ | got | [ gɔt ] |
| 15 | ɔ: | Caught | [ kɔ:t ] |
| 16 | u: | food | [ fu:d ] |

# ଆଦ୍ୟ କଥନ

ପ୍ରାୟ ଆଠବର୍ଷ ତଳର କଥା । ଜଣେ ଭୂତପୂର୍ବ ଡ଼. ପି. ଆଇ. ଗୋଟିଏ ସ୍କୁଲ ପରିଦର୍ଶନ କରି ଏକାଦଶ ଶ୍ରେଣୀରେ ଇଂରେଜୀ ପରୀକ୍ଷା କରିଥିଲେ । ପିଲାମାନଙ୍କର ଇଂରେଜୀ ପଢ଼ା ଶୁଣି ସେ ଆଶ୍ଚର୍ଯ୍ୟ ହୋଇଗଲେ କାରଣ ସେମାନଙ୍କର ଇଂରେଜୀ ଉଚ୍ଚାରଣ ସେ ସହଜରେ ବୁଝି ପାରିଲେ ନାହିଁ । ସୁତରାଂ ଇଂରେଜୀ ଫୋନେଟିକସ୍ ନ ପଢ଼ାଇଲେ ଇଂରେଜୀ ବୁଝିବା ଯେ ଏଣିକି କଷ୍ଟ ହେବ ଏଥିରେ ତାଙ୍କର ଆଉ ସନ୍ଦେହ ରହିଲା ନାହିଁ । ସେତିକି ବେଳକୁ ଟ୍ରେନିଂ କଲେଜ ଛାତ୍ରମାନଙ୍କୁ ଇଂରେଜୀ ଫୋନେଟିକସ୍ ଶିକ୍ଷା ଦେଇ ସେମାନଙ୍କ ଜରିଆରେ ତଳ କ୍ଲାସରୁ ଇଂରେଜୀ ଉଚ୍ଚାରଣକୁ ସୁଧାରିବା ପାଇଁ ଡ଼. ପି. ଆଇଙ୍କୁ ମୁଁ ଗୋଟିଏ ସ୍କିମ ଦେଇଥିଲି । ତାର ଉତ୍ତରରେ ଡ଼. ପି. ଆଇ. ତାଙ୍କର ତା୧୩-୨-୫୪ ଚିଠିରେ "The lectures on phonetics may be delivered and be made compulsory" ବୋଲି ଲେଖିଥିଲେ । ତାପରେ ମୁଁ ଆଉ ଗୋଳିଯିବାରୁ ସେ ବିଷୟରେ ଆଉ କ'ଣ ହେଲା ଜାଣିପାରିଲି ନାହିଁ । କିନ୍ତୁ ସୌଭାଗ୍ୟର କଥା ଇଂରେଜୀ ଫୋନେଟିକସ୍ ବିଷୟରେ କେନ୍ଦ୍ର ସରକାର ତଥା ରାଜ୍ୟ ସରକାର ଏବେ ବେଶ୍ ସଜାଗ ହେଲେଣି । ଏକସ୍‌ଟେନସନ୍ ସ୍କିମରେ ଇଂରେଜୀ ଫୋନେଟିକସ ଶିକ୍ଷା ଦେବାର ବ୍ୟବସ୍ଥା ହୋଇଛି । କିନ୍ତୁ ସେ ଯେଉଁ ସାମୟିକ ପନ୍ଦର ଦିନିଆ ବ୍ୟବସ୍ଥା ସବୁ ହୋଇଛି ସେଥିରେ ଫୋନେଟିକସ୍ ପରି ଜଟିଳ ବିଷୟ ପଢ଼ିବା ପାଠ କେତେଦୂର ସଫଳ ହେବ ତାହା ଭବିଷ୍ୟତ କହିବ । ୧୯୬୧ରେ ଅନୁଗୁଳ ବେସିକ୍ ଟ୍ରେନିଂ କଲେଜର ଅଧ୍ୟକ୍ଷ ଶ୍ରୀଯୁକ୍ତ ଶମ୍ଭୁ ନାଥଙ୍କ ଚେଷ୍ଟାରେ ସେହି କଲେଜରେ ସାମୟିକ ଫୋନେଟିକସ୍ ଲେକଚରର ଆରମ୍ଭ ହୋଇଛି ।

ଉପରେ ସ୍କୁଲ କ୍ଲାସରେ ଇଂରେଜୀ ଉଚ୍ଚାରଣର ଅବନତି କଥା କୁହାଯାଇଛି । କିନ୍ତୁ ଏବେ କଲେଜରେ ଯାହା ହେଲାଣି ଶୁଣିଲେ ନ ଜାଣିଲା ଲୋକେ ବିଶ୍ୱାସ କରିବେ ନାହିଁ । କଲେଜ କ୍ଲାସରେ Champagne କୁ 'ଚମ୍ପାଗନ୍' Passionate କୁ 'ପାସିଅନେଟ୍', Christmasକୁ 'କ୍ରିଷ୍ଟମାସ୍' ବୋଲି ଉଚ୍ଚାରଣ କରିବା ଛାତ୍ରଙ୍କର ଅଭାବ ନାହିଁ । ଛାତ୍ରମାନଙ୍କର କ୍ଲାସରେ ଇଂରେଜୀରେ ପ୍ରଶ୍ନ ପଚାରିବାର ସାହସ ଆସ୍ତେ ଆସ୍ତେ କମି ଯାଉଛି, ତାର କାରଣ ଇଂରେଜୀ କହିବାକୁ ସେମାନଙ୍କୁ ଡର ଲାଗୁଛି । ଟିକିଏ ପରୀକ୍ଷା କରି ଦେଖିଲେ ଜଣାପଡ଼ିବ

ସେ ସହର ଅଞ୍ଚଳର ଛାତ୍ରମାନଙ୍କ ଅପେକ୍ଷା ସୁଦୂର ଗ୍ରାମ୍ୟ ଅଞ୍ଚଳରେ ହାଇସ୍କୁଲ ଛାତ୍ରମାନଙ୍କର ଇଂରେଜ ଉଚ୍ଚାରଣ ଅଧିକ ଭ୍ରାନ୍ତିପୂର୍ଣ୍ଣ । ତାର କାରଣ ବୋଧହୁଏ ସହର ଅଞ୍ଚଳର ଛାତ୍ରମାନେ ଯେତେ ଇଂରେଜ ଶୁଣିବାର ଓ କହିବାର ସୁଯୋଗ ପାଆନ୍ତି, ଗ୍ରାମ୍ୟ ଅଞ୍ଚଳର ଛାତ୍ରମାନେ ସେତେ ପାଆନ୍ତି ନାହିଁ । ଅବଶ୍ୟ ଏହା ଯେ କେବଳ ଓଡ଼ିଶାର ସମସ୍ୟା ତାହା ନୁହେଁ, ସମସ୍ତ ଭାରତର ପ୍ରାୟ ଏକ ପ୍ରକାର ସମସ୍ୟା । ଉତ୍ତର ଭାରତର ଅନେକ ସ୍କୁଲରେ Studentର କଷ୍ଟ ଟେଣ୍ଟ ଓ withର 'ୱିଥ୍' ମନ ଅନେକ ଭ୍ରାନ୍ତ ଓ ଅନେକ ସମୟରେ ହାସ୍ୟୋଦ୍ଦୀପକ ଉଚ୍ଚାରଣ ଶୁଣାଯାଏ । ତେଣୁ ଏହା ଏକ ସ୍ଥାନୀୟ ସମସ୍ୟା ନୁହେଁ ଜାତୀୟ ସମସ୍ୟା ଏବେ କେତେକ ରାଜ୍ୟରେ ଚତୁର୍ଥ ଶ୍ରେଣୀରୁ ଇଂରେଜ ପଢ଼ା ହେବାର ଯେଉଁ ବ୍ୟବସ୍ଥା ହେଲାଣି ସେଥିରେ ଇଂରେଜ ପଢ଼ାର ଅବସ୍ଥା ଯେ କ'ଣ ହେବ ଭଗବାନ ଜାଣନ୍ତି ।

ଘାପ ଲଭିଲାବେଳେ ଅଧିକ ଜଳଲା ପରି ହିନ୍ଦୁସ୍ଥାନରୁ ଇଂରେଜ ଗଣ୍ଠିଲି ବାନ୍ଧିଲାବେଳକୁ ସରକାରଙ୍କର ଚେତା ଆସିଛି । ଏବେ ହାଇଦରାବାଦରେ କେନ୍ଦ୍ରସରକାରଙ୍କର Central Institute of English ଆରମ୍ଭ ହୋଇଛି ଓ ଭାରତ ସରକାର ଆମେରିକାରୁ ଫୋନେଟିକ୍ସ ବିଶେଷଜ୍ଞ ମଗାଇ ଭାରତର ବିଭିନ୍ନ ଅଞ୍ଚଳରେ ଇଂରେଜ ଫୋନେଟିକସ୍ ଶିକ୍ଷା ଦେବାର ବ୍ୟବସ୍ଥା କରୁଛନ୍ତି । ଏହିପରି କେତେକ ବିଶେଷଜ୍ଞଙ୍କ ସଙ୍ଗରେ ଉତ୍ତର ଭାରତରେ କିଛିକାଳ ବୁଲି ଯାହା ଦେଖିଲି ସେ ଆହୁରି ଏକ ସମସ୍ୟା । ବ୍ରିଟିଶ କାଉନ୍‌ସିଲ କେତେକ ସ୍କୁଲରେ ବ୍ରିଟିଶ ଇଂରେଜ ଉଚ୍ଚାରଣ ଶିଖାଇ ଦେଇଯିବା ପରେ ଆମେରିକାନମାନେ ଆମେରିକାନ ଉଚ୍ଚାରଣ ଶିକ୍ଷା ଦେଉଛନ୍ତି । ସରକାର ଏଥିରେ କ'ଣ ବୁଝୁଛନ୍ତି ସେ ଜାଣନ୍ତି କିନ୍ତୁ ଛାତ୍ରମାନଙ୍କର ଅବସ୍ଥା ଯାହା ଦେଖିଲି ବଡ଼ ମୁସ୍କିଲ । ଚେତେ ଇଂରେଜ ଉଚ୍ଚାରଣ ବିଷୟରେ ସ୍ପଷ୍ଟ ଧାରଣା ନାହିଁ । ଏଣେ ତା ଉପରେ ଆମେରିକାର ନୂଆ ଉଚ୍ଚାରଣ ଶିକ୍ଷା ଦିଆଯାଇଛି । ଫଳ କେବଳ ପ୍ଲସ୍ ମାଇନସ୍ ଶୂନ ନୁହେଁ, ସାର ହେଉଛି, 'ଫଣପ୍ରାପ୍ତା ବିନଶ୍ୟନ୍ତି ।' ଏକଥା ଦୃଢ଼ତାର ସହିତ କୁହାଯାଇ ପାରେ ଯେ, କୌଣସି ଭାଷାର ଫୋନେଟିକସ୍ ଦିନର ଭିତରେ ଆୟତ୍ତ କରାଯାଇପାରେ ନାହିଁ । ତା ଛଡ଼ା ଯେଉଁଠି ଛାତ୍ରମାନେ ଭୁଲ ପଦ୍ଧତିରେ ଆଗରୁ ଶିଖିଥାନ୍ତି, ସେମାନଙ୍କର ସେହି ଭୁଲକୁ ସୁଧାରି ପୁଣି ସେମାନଙ୍କୁ ନୂଆ ବାଟରେ ନେବା ପାଇଁ କେତେ ସମୟ ଓ କେତେ ଅଧ୍ୟବସାୟ ଦରକାର ତାହା ଯେ କୌଣସି ଧ୍ୱନିବିତ୍ ଜାଣନ୍ତି । ତେଣୁ 'ମୂଳ ମାଇଲେ ଯାଉ ସରି' ମତରେ ପିଲାଙ୍କୁ ମୂଳରୁ ଭୁଲ ଉଚ୍ଚାରଣ ନ ଶିଖାଇ

ଫୋନେଟିକସ୍ ପଦ୍ଧତିରେ ଶିଖାଇଲେ ଭବିଷ୍ୟତରେ କ୍ଷଅସୁବିଧାରେ ପଡ଼ିବାକୁ ହେବ ନାହିଁ । ସେଥିପାଇଁ ଇଂରେଜ ଶିକ୍ଷକମାନଙ୍କର ଟ୍ରେନିଂ ଦରକାର ଓ ତାହା ଟ୍ରେନିଂ କଲେଜରୁ ହିଁ ଆରମ୍ଭ ହେବା ଉଚିତ । ତଳ କ୍ଲାସରୁ ଇଂରେଜୀକୁ ବାଧ୍ୟତାମୂଳକ କରିବାକୁ ହେଲେ ଟ୍ରେନିଂ ସ୍କୁଲରେ ଫୋନେଟିକସ୍ ଓ ଭାଷାତତ୍ତ୍ୱକୁ ବାଧ୍ୟତାମୂଳକ କରିବା ନିତାନ୍ତ ଦରକାର । ପୁରୁଣା ଫଳଲ୍ଗ ଶିକ୍ଷା ପଦ୍ଧତିକୁ ପରିତ୍ୟାଗ କରି ଇଂରେଜ ଏମ୍. ଏ. ରେ ଇଂରେଜ ଫୋନେଟିକ୍ସ ପାଇଁ ସ୍ୱତନ୍ତ୍ର ଶିକ୍ଷା ବ୍ୟବସ୍ଥା କରିଲେ ଖୁବ୍ ଭଲ ହୁଅନ୍ତା । ୧୯୦୭ ମସିହାରେ ଇଂଲଣ୍ଡର ଶିକ୍ଷାବୋର୍ଡ଼ କହିଥିଲେ, "A systematic training in Phonetics and Historical grammar is an essential part of the equipment of the Primary teacher. " ଏ ଦେଶରେ କେତେଜଣ ଭାଷା ଶିକ୍ଷକଙ୍କର ନିଜେ ପଢ଼ାଉଥିବା ଭାଷାର ଫୋନେଟିକ୍ସ ବିଷୟରେ ଧାରଣା ଅଛି ? ଗୋଟିଏ ଅଧ୍ୟାପକ ମନୋନୟନ ବୋର୍ଡ଼ରେ ଜଣେ ଇଂରେଜ ଏମ୍. ଏ.କୁ ମୁଁ ପଚାରିଲି, 'ଇଂରେଜୀରେ [ f ] ଧ୍ୱନି ଥିବା ଶବ୍ଦଟିଏ କହନ୍ତୁ ।" ସେ ଯାହା ଉତ୍ତର ଦେଲେ ମୁଁ ସ୍ତମ୍ଭୀଭୂତ ହେଲି । ପ୍ରାଇମେରି ଶିକ୍ଷକତ କାହିଁ ଦୂରରେ ? ଦୋଷ ବ୍ୟକ୍ତିଙ୍କର ନୁହେଁ, ଦୋଷ ଆମ ଶିକ୍ଷା ପଦ୍ଧତିର । ଆମେ ୧୯୭୨ରେ ଯାହା କଳ୍ପନା କରିନାହୁଁ, ତାକୁ ଯେଉଁମାନେ ୧୯୦୭ ମସିହାରେ କାର୍ଯ୍ୟକାରୀ କରି ସାରିଥିଲେ ସେମାନେ ଆମଠୁ କେତେ ଆଗରେ ଥିବେ ବୁଝାଇବା ଦରକାର ନାହିଁ ।

ଭାରତର କେତେକ ବିଦ୍ୟାପୀଠରେ ଭିନ୍ନ ଭିନ୍ନ ସମୟରେ ଇଂରେଜ ଫୋନେଟିକ୍ସ ଶିକ୍ଷା ଦେଇ ଦେଖିଛୁ ଆମମାନଙ୍କ ପରି ପ୍ରତ୍ୟେକ ଜାତିର ଇଂରେଜ ଉଚ୍ଚାରଣର ବୈଶିଷ୍ଟ୍ୟ ରହିଛି । ସବୁଠି ଏହାକୁ ସୁଧାରିବାର ଚେଷ୍ଟା ଯେମିତି ଚାଲିଛି ଓଡ଼ିଶାରେ ମଧ୍ୟ ସେମିତି ଆରମ୍ଭ ହୋଇଛି । ଅବଶ୍ୟ ପାଣିକୁ ଟେକା ଫିଙ୍ଗିଦେଲେ ଟେକା ଯେମିତି ପାଣି ଭିତରେ କୁଆଡ଼େ ହଜିଯାଏ, ଆମର ଏହି କ୍ଷୀଣ ଚେଷ୍ଟା ସେହିଭଳି କେଉଁଆଡ଼େ ହଜି ଯାଉଛି । ଯାହା କରି ଯାଉଛି ତାକୁ ଅଧିକକାଳ ସ୍ଥାୟୀ କରି ପାରିଲେ କିଛି ଅବା ଉପକାର ହୁଅନ୍ତା । ଯଦି ବିଶେଷ କିଛି ନ ହୋଇ ପାରିଲା, ତା ହେଲେ ଅନ୍ତତଃ ଯେଉଁ ସବୁ ଶବ୍ଦକୁ ଆମେ ଅତି କଦର୍ଯ୍ୟ ଭାବରେ ଉଚ୍ଚାରଣ କରୁ ଏବଂ ଯାହା ଶୁଣିଲେ ଲୋକେ ଆମକୁ ସୁଶିକ୍ଷିତ ବୋଲି ମନେ କରନ୍ତି ନାହିଁ, ସେଡକ ଅନ୍ତତଃ ସୁଧୁରି ଯାଆନ୍ତା । ଆଙ୍କ୍ସିଅସ୍ ( anxious ), ଗ୍ରେସିଅସ୍ ( gracious ), ପ୍ରେସିଅସ୍ ( precious )

ବଟ୍ ( but ), ଅସ୍ ( us ), ଯେମିତି ବହୁଳ ଭାବରେ ପଲ୍ଲଙ୍କ ମୁହଁରୁ ଶୁଣା ଗଲାଣି ସେଥିରେ ଇଂରେଜର ମହତ୍ତ ଯାଉ ପଛେ, ଆମ ପାଠ ପଢ଼ାର ମହତ୍ତ ରହୁ, ଏତିକି ଚିନ୍ତା କରିବାର କଥା । ଆମ ଉଚ୍ଚାରଣ କଥା କହିବାକୁ ଗଲାବେଳେ ଆଗେ ଓଡ଼ିଶାରେ ଗୋଟିଏ ଇଂରେଜ ସ୍କୁଲରେ ଓଡ଼ିଆ ପିଲଙ୍କ ନାମ କେମିତି ଲେଖା ଯାଉଥିଲା ସେହି କଥା ମନେ ପଡ଼େ । ଆଶ୍ଚର୍ଯ୍ୟ ଲାଗେ ବଙ୍ଗାଳି ଶିକ୍ଷକମାନେ ଓଡ଼ିଆ ଧ୍ୱନିକୁ ଇଂରେଜରେ କେମିତି କମୂଚକମାକାର ରୂପରେ ଲେଖୁଥିଲେ । ପାଠକ ଏହି ଇଂରେଜ ଉଚ୍ଚାରଣ ପୁସ୍ତକ ଶେଷ କରିବା ବେଳକୁ ସେହି ରୂପର କେତେକ ମର୍ମ ବୁଝି ପାରିଥିବେ । ଏଠି ସେ କାଳର ଦୁଇ ତିନୋଟି ଓଡ଼ିଆ ନାମର ଇଂରେଜ ରୂପ ଦେଖନ୍ତୁ ।

ବାଉରୀବନ୍ଧୁ ଦାସ—Bowreebundoo Doos
ମଧୁସୂଦନ —Modoosoodun
ରଘୁ ଦାସ —Rogoo Doss
ଅନନ୍ତ ମିଶ୍ର —Aununt Mettre

ଇଂରେଜ ଫୋନେଟିକସ୍ ବିଷୟରେ ସହଜ ଓ ସ୍ୱଳ୍ପମୂଲ୍ୟ ପୁସ୍ତକ ଖୁବ୍ କମ । ତା'ଛଡ଼ା ଇଂରେଜ ଫୋନେଟିକସ୍ ବିଷୟରେ ଓଡ଼ିଆ ତଥା ଭାରତୀୟ ଭାଷାର ତୁଳନାତ୍ମକ ବିଚାର ନାହିଁ । ତେଣୁ ଓଡ଼ିଆ ଛାତ୍ର ମାନଙ୍କ ପାଇଁ ତାହା ବୁଝିବା କଷ୍ଟସାଧ୍ୟ । ଇଂରେଜ ଫୋନେଟିକସ୍ ଜାଣିବା ପାଇଁ ଓଡ଼ିଆ ଫୋନେଟିକସ୍‌ରେ କିଛି ଜ୍ଞାନ ଥିଲେ ଉଭୟକୁ ତୁଳନା କରି ଶିକ୍ଷା କରିବା ସହଜ । ତେଣୁ ଓଡ଼ିଆ ଛାତ୍ର ମାନଙ୍କ ପାଇଁ ଏହି ତୁଳନାତ୍ମକ ଆଲୋଚନା ପୁସ୍ତିକାଟି ଲେଖିବା ପାଇଁ ସ୍ଥିର କଲି । ମାତ୍ର ଓଡ଼ିଶାରେ ଫୋନେଟିକସ୍ ବହି ଛପାଇବା ଅତି କଠିନ ବ୍ୟାପାର । ହିନ୍ଦୀ ମୋ 'ଧ୍ୱନିବିଜ୍ଞାନ' ପୁସ୍ତକ ହିନ୍ଦୀରେ ଛପା ହେଲା ବେଳେ ମୁଁ ଫୋନେଟିକ ଅକ୍ଷର ତିଆରି କରାଇଥିଲି । ସେହି ଧ୍ୱନି ବିଜ୍ଞାନହିଁ ସମ୍ପୂର୍ଣ୍ଣ ଫୋନେଟିକ ଟାଇପରେ ଭାରତୀୟ ଭାଷାରେ ଛପା ହେବାର ପ୍ରଥମ ପୁସ୍ତକ ଏବଂ ଏହି ଇଂରେଜ ଉଚ୍ଚାରଣ ଶିକ୍ଷା ଫୋନେଟିକ ଟାଇପରେ ଛପା ହେବାର ସର୍ବ ପ୍ରଥମ ଓଡ଼ିଆ ପୁସ୍ତକ । ଏହି ପୁସ୍ତକରେ ଇଂରେଜ ଭାଷାରେ ଧ୍ୱନିଠାରୁ ଆରମ୍ଭ କରି ସ୍ୱର ଲହରୀ ପର୍ଯ୍ୟନ୍ତ ସରଳ ଭାଷାରେ ସଂକ୍ଷେପରେ ଲେଖା ଯାଇଛି । କେତେକ ସ୍ଥଳରେ କହିବା କଥାକୁ ବୋଧଗମ୍ୟ କରିବା ପାଇଁ ଚିତ୍ରର ସହାୟତା ନିଆ ଯାଇଛି । ଯେ କୌଣସି ଛାତ୍ର ଏହି ବହି ଶେଷ କଲା ବେଳକୁ ଓଡ଼ିଆ ଓ ଇଂରେଜ

ଫୋନେଟିକସ୍ ବିଷୟରେ ଏକ ତୁଳନାତ୍ମକ ପରିଚୟ ପାଇ ପାରିଥିବେ, ଏଥିରେ ସନ୍ଦେହ ନାହିଁ । ଅନ୍ତତଃ ସେ କୌଣସି ଫୋନେଟିକ ଡିକସ୍‌ନାରି ପଢ଼ି ପାରିବା ପାଇଁ ଶକ୍ତି ଅର୍ଜନ କରିଥିବେ । ଆମ ଛାତ୍ରମାନେ ଯଦି ଫୋନେଟିକ ଡିକସ୍‌ନାରି ନିଜେ ନିଜେ ପଢ଼ି ପାରିବେ ତା ହେଲେ ଅନେକ କଥା ହୋଇଗଲା ବୋଲି ବୁଝିବାକୁ ହେବ । ଆଜି କାଲି କେବଳ ଇଂରେଜୀ ନୁହେଁ, ଯେ କୌଣସି ବିଦେଶୀ ଭାଷାର ଭାଷାକୋଷରେ ଶବ୍ଦର ଉଚ୍ଚାରଣ ମାନଙ୍କୁ ଫୋନେଟିକ ଅକ୍ଷରରେ ଦେଖାଇ ଦିଆ ଯାଉଛି । ତେଣୁ ଫୋନେଟିକ ଅକ୍ଷର ମାନଙ୍କ ବିଷୟରେ ସମ୍ୟକ୍ ଜ୍ଞାନ ରହିଲେ ଉଚ୍ଚାରଣ ଶିକ୍ଷାର ଅସଲ ଗୃହ ମିଳିଲା ବୋଲି ଭାବିବାକୁ ହେବ ।

କିନ୍ତୁ ଏହି ପୁସ୍ତକ ପଢ଼ି ଆମେରିକାନ୍ ଇଂରେଜୀ ବିଷୟରେ ବିଶେଷ ଜ୍ଞାନ ହେବାର ଆଶା ନାହିଁ । କାରଣ ଆଦର୍ଶ ଆମେରିକାନ୍ ଉଚ୍ଚାରଣ ବ୍ରିଟିଶ ଇଂରେଜୀ ଉଚ୍ଚାରଣ ଠାରୁ ବହୁତ ଭିନ୍ନ । କିନ୍ତୁ ଫୋନେଟିକସ୍ ଅକ୍ଷରମାନଙ୍କ ସହିତ ପରିଚିତ ହୋଇ ସାରିବା ପରେ କେହି ଚାହିଁଲେ ଆମେରିକାନ୍ ଉଚ୍ଚାରଣ ଅଧ୍ୟୟନ କରି ପାରନ୍ତି । ଏହି ପୁସ୍ତକର ପ୍ରକୃତ ସହିତ ମୁଦ୍ରାକରଙ୍କର ଅନଭ୍ୟସ୍ତତା ଯୋଗୁଁ ଉପୁଜି ଥିବା ଗୋଟିଏ ଦୁଇଟି ତ୍ରୁଟି ସହିତ ପାଠକମାନଙ୍କୁ ପରିଚିତ କରାଇ ଦେବା ଉଚିତ । ଓଡ଼ିଶାର କୌଣସି ପ୍ରେସରେ ଏଥି ପୂର୍ବରୁ ଫୋନେଟିକସ୍ ପୁସ୍ତକ ଛପା ନ ହୋଇଥିବା ଫଳରେ ଫୋନେଟିକସ୍ ଅକ୍ଷର ଚିହ୍ନିବା ମୁଦ୍ରାକର ମାନଙ୍କ ପକ୍ଷରେ କଷ୍ଟସାଧ୍ୟ । ତା'ଛଡ଼ା ଫୋନେଟିକସ୍‌ରେ ସାମାନ୍ୟ ବିନ୍ଦୁଟାଏ କମା ଡାସ୍‌ଟାଏର ମୂଲ୍ୟ ଅନେକ ବେଶୀ । ବ୍ରହ୍ମପୁରରେ ବହି ଛପା ହୋଇ ପୁଣିଥରେ ସଂଶୋଧନ କରିବାକୁ ପଡ଼ିଲା । କେଉଁଠି ଡାସ୍‌ଟାଏ ଖସି ଯାଇଛି ତ କେଉଁଠି ଅକ୍ଷରଟାଏ ଟେଢ଼ା ହୋଇ ଯାଇଛି । ବିଜ୍ଞ ପାଠକ ପଢ଼ୁ ପଢ଼ୁ ଯେ ତାହା ବୁଝି ପାରିବେ ଏଥିରେ ସନ୍ଦେହ ନାହିଁ, ତଥାପି ଏହି ଅନିବାର୍ଯ୍ୟ ତ୍ରୁଟି ପାଇଁ ଲେଖକ ଦୁଃଖିତ । ଫୋନେଟିକ୍ ଅକ୍ଷର ସହିତ ନୂତନ ପରିଚୟ ଯୋଗୁ ଯେଉଁ ଅଶୁଦ୍ଧି ଦେଖା ଦେଇଛି ସେଥିପାଇଁ ଶୁଦ୍ଧିପତ୍ର ଦିଆ ଯାଇଛି । ଆସନ୍ତା ସଂସ୍କରଣରେ ଏହି ତ୍ରୁଟି ମାର୍ଜନା ପାଇଁ ଆଶା ରଖା ଯାଇଛି । ବହି ଯେ ଆଦୌ ପ୍ରକାଶିତ ହୋଇ ପାରିଲା ସେଥିପାଇଁ ମୁଁ ଅନେକ ଅଶ୍ୱସ୍ତ ଓ ପୁସ୍ତକର ପ୍ରକାଶକ ବିଶେଷ ଧନ୍ୟବାଦର ପାତ୍ର ।

ଗଂଜେଇଡିହ, ଢେଙ୍କାନାଳ, ଫେବୃଆରି ୧୯୬୩ **ଲେଖକ**

| | | ଓଷ୍ଠ୍ୟ | | | | | | | | |
|---|---|---|---|---|---|---|---|---|---|---|
| | | ଦ୍ୱ୍ୟୋଷ୍ଠ୍ୟ | ଦନ୍ତୋଷ୍ଠ୍ୟ | ଦନ୍ତ୍ୟ | ବର୍ତ୍ସ୍ୟ | ପଶ୍ଚ ବର୍ତ୍ସ୍ୟ | ତାଲୁ ବର୍ତ୍ସ୍ୟ | ତାଲବ୍ୟ | କଣ୍ଠ୍ୟ | କାକଲ୍ୟ |
| ବ୍ୟଞ୍ଜନ | ସ୍ପର୍ଶ | p b | | | t d | | | | k g | |
| | ସ୍ପର୍ଶସଂଘର୍ଷୀ | | | | | tr dr | tʃ dʒ | | | |
| | ନାସିକା | m | | | n | | | | ŋ | |
| | ପାର୍ଶ୍ୱିକ | | | | l | | | | (l) | |
| | ସଂଘର୍ଷୀ | | f v | θ ð | s z | r | ʃ ʒ | | | h |
| | ଅର୍ଦ୍ଧସ୍ୱର | w | | | | | | j | (w) | |
| ସ୍ୱର | | | | | | | | ଅଗ୍ର | ମଧ୍ୟ ପଶ୍ଚାତ | |
| | ସଂବୃତ | (u:) (u) | | | | | | i: 1<br>i 2 | 9 u:<br>8 u | |
| | ଅର୍ଦ୍ଧ ସଂବୃତ | (o) | | | | | | e 3 | ə: 11 0 | |
| | ଅର୍ଦ୍ଧ ବିବୃତ | (ɔ:) | | | | | | ɛ | ə 12 7 ɔ: | |
| | ବିବୃତ | (ɔ) | | | | | | æ 4<br>a | ʌ 10 6 ɔ<br>5 ɑ | |

ଇଂରେଜି ଧ୍ୱନି ମାଳା

## ଦ୍ୱିତୀୟ ସଂସ୍କରଣ

୧୯୬୩ ମସିହାରେ ପ୍ରଥମେ ଯେତେବେଳେ ଏହି ପୁସ୍ତକଟି ଲେଖା ହେଲା ସେତେବେଳେ କେହି କଳ୍ପନା କରି ନ ଥିଲେ ଯେ ଏ ବହିର ଦ୍ୱିତୀୟ ମୁଦ୍ରଣ କେବେ ଦରକାର ହେବ । କିନ୍ତୁ ଯେତେ ବିଳମ୍ବରେ ହେଲେ ମଧ୍ୟ ଏହା ଯେ ଆଦୌ ଦରକାର ହେଲା ତାହା ଏକ ସୌଭାଗ୍ୟର କଥା ।

ପ୍ରଥମ ମୁଦ୍ରଣର ଆଦ୍ୟ କଥନରେ ଏହି ବହି ତଥା ଇଂରେଜି ଫୋନେଟିକ୍‌ସର ଦୁରବସ୍ଥା କଥା କୁହା ଯାଇଛି । ବର୍ତ୍ତମାନ ୧୯୬୩ରୁ ଆଜି ପର୍ଯ୍ୟନ୍ତ ଯାହା ଘଟିଛି ତାର ଏକ କ୍ଷୁଦ୍ର ସୂଚନା ଦେବା ଆବଶ୍ୟକ ମନେ କରୁଛି; କାରଣ ତାହା ସହିତ ଏହି କ୍ଷୁଦ୍ର ପୁସ୍ତକଟିର ଭାଗ୍ୟ ଓ ଭବିଷ୍ୟତ ନିବିଡ଼ ଭାବରେ ଜଡ଼ିତ ।

ଆଗେ ଟ୍ରେନିଂ କଲେଜରେ ଇଂରେଜି ଫୋନେଟିକ୍‌ସ ବିଷୟରେ ଲେକ୍‌ଚର ଦିଆ-ଯାଉଥିଲା କିନ୍ତୁ ପ୍ରାକ୍‌ଟିସ୍‌ରେ କିଛି କରା ଯାଉ ନ ଥିଲା । ଫଳରେ ଯେଉଁ ଶିକ୍ଷକମାନେ ଟ୍ରେନିଂନେଇ ଯାଉଥିଲେ ସେମାନେ ବୋଧହୁଏ ଫୋନେଟିକସ୍‌ର ଅସ୍ତିତ୍ୱ ବିଷୟରେ ଜାଣୁ-ଥିଲେ ମାତ୍ର ଫୋନେଟିକସ୍‌କୁ ଶ୍ରେଣୀରେ ବ୍ୟବହାର କରି ପାରୁ ନ ଥିଲେ । ମାତ୍ର କାଳକ୍ରମେ ଫୋନେଟିକସ୍‌ର ଏହି ଥିଓରି ଲେକ୍‌ଚର ମଧ୍ୟ ଟ୍ରେନିଂ କଲେଜରୁ ଲୁପ୍ତ ହୋଇଗଲା ।

ପ୍ରଥମେ ଯେତେବେଳେ ଓଡ଼ିଶାରେ ପ୍ରାଥମିକ ଶିକ୍ଷାବୋର୍ଡ଼ ଗଢ଼ା ହେଲା ସେଥିରେ ସଦସ୍ୟ ହେବାର ସୌଭାଗ୍ୟ ମୋତେ ମିଳିଥିଲା । ସେଠି ୪ର୍ଥ ଶ୍ରେଣୀର ନୂତନ ଇଂରେଜି ବହି 'Picture book'କୁ ଫୋନେଟିକସ୍ ମେଥଡ଼ରେ ପଢ଼ାଇବା ପାଇଁ ଯେତେବେଳେ ସ୍ଥିର ହେଲା, ସେତେବେଳେ ମୁଁ କହିଥିଲି ଯେ ପ୍ରଥମେ ଶିକ୍ଷକମାନଙ୍କୁ ଇଂରେଜି

ଫୋନେଟିକସ୍‌ରେ ତାଲିମ ନ କରି ଉତ୍ତମ ଇଂରେଜ ଶିକ୍ଷା ଦେବା ସମ୍ଭବପର ନୁହେଁ । ଶିକ୍ଷାବୋର୍ଡ଼ର ତତ୍‌କାଳୀନ ସଭାପତି ଅତି ଆଗ୍ରହରେ ସେହି ପ୍ରସ୍ତାବକୁ ସ୍ୱୀକାର କରିବା ଫଳରେ ପୁରୀଠାରେ ଗ୍ରୀଷ୍ମ ଓ ଦଶହରା ମିଶି ତିନୋଟି ଫୋନେଟିକସ୍ ଶିକ୍ଷା ଶିବିର ମୁଁ ପରିଚାଳନା କରିଥିଲି । ସେଥିରେ ମାଇନର ସ୍କୁଲର ଯେଉଁ ଶିକ୍ଷକମାନେ ଇଂରେଜ ଅଧ୍ୟାପନା ଦାୟିତ୍ୱରେ ଥିଲେ, ସେହିମାନଙ୍କୁ ଟ୍ରେନିଂ ଦିଆ ଯାଉଥିଲା । କଳ୍ପନା କରା ଯାଇଥିଲା ଯେ ଏହିପରି କେତେଗୁଡ଼ିଏ ସାମୟିକ ଶିକ୍ଷାଶିବିର ଜରିଆରେ କେତେବର୍ଷ ଭିତରେ ମାଇନର ସ୍କୁଲ ଶିକ୍ଷକମାନଙ୍କୁ ଟ୍ରେନିଂ ଦେଇ ସାରିଲେ ତା'ପରେ ମାଇନର ସ୍କୁଲ ପରିଦର୍ଶକ-ମାନଙ୍କୁ ଟ୍ରେନିଂ ଦିଆଯିବ, ଫଳରେ ଶିକ୍ଷକ ଓ ପରିଦର୍ଶକ ଉଭୟ ଟ୍ରେନିଂ ପାଇ ଗଲେ ଫୋନେଟିକସ୍ ଭଲ ଚାଲିବ । ଖାଲି ସେତିକି ନୁହେଁ, ଟ୍ରେନିଂ ପରେ ଶିକ୍ଷକମାନଙ୍କର ଅଭ୍ୟାସ ରକ୍ଷା କରିବା ପାଇଁ ଫୋନେଟିକସ୍ ରେକର୍ଡ଼ ମଧ୍ୟ ତିଆରି କରାଗଲା । ମାତ୍ର ସେ ସଭାପତି ପଦରେ ପରିବର୍ତ୍ତନ ହେବା ପରେ ସେ ସ୍କିମ ବିଦାୟ ହୋଇଗଲା । ସେତେବେଳେ ଟ୍ରେନିଂ କଲେଜମାନଙ୍କରେ ସମ୍ପ୍ରସାରଣ ପ୍ରୋଜେକ୍ଟ ଅଧୀନରେ ଇଂରେଜ ଫୋନେଟିକସ୍ ଲେକ୍‌ଚର ପାଇଁ ବ୍ୟବସ୍ଥା ଥିଲା । ଏବେ ତାହା ଅଛି କି ନାହିଁ ମୋତେ ଜଣା ନାହିଁ, ଖୁବ୍ ସମ୍ଭବତଃ ନାହିଁ, ଯଦି ବା କେଉଁଠି କେମିତି ଥାଏ ତାର ପ୍ରାକ୍‌ଟିକାଲ ମୂଲ୍ୟ ବିଶେଷ କିଛି ନାହିଁ ।

ବର୍ତ୍ତମାନ ରେଭେନ୍‌ସା କଲେଜରେ ଚାରୋଟି ବିଶ୍ୱ ବିଦ୍ୟାଳୟର ଉତ୍କଳ, ସମ୍ବଲ-ପୁର, ବରମପୁର ଓ ବାକି ଇଂରେଜ ଶିକ୍ଷକମାନଙ୍କୁ ଗ୍ରୀଷ୍ମ ଅନୁଷ୍ଠାନରେ ଭାଷାତତ୍ତ୍ୱ ଟ୍ରେନିଂ ଦିଆ ଯାଉଛି । ସେଥିରେ ଇଂରେଜ ଫୋନେଟିକସ୍ ପଢ଼ାଇବାର ସୁଯୋଗ ମୋତେ ମିଳୁଛି । ସେଠି ଅଧ୍ୟାପକମାନେ ଯାହା ଅନୁଭବ କରୁଛନ୍ତି ତାହା ବହୁ କାଳରୁ ମଧ୍ୟ ବୁଝା ହୋଇ ଆସୁଛି । ସେମାନେ କହନ୍ତି ଯେ ସ୍କୁଲରୁ ପିଲାମାନେ ଭିନ୍ନ ଭାବରେ ଶିକ୍ଷା ପାଇ ଆସି କଲେଜରେ ପୁଣି ନୂଆ ବାଟରେ ଚାଲିବା ଆଦୌ ସମ୍ଭବ ନୁହେଁ । ଯେ ଥରେ Come ଓ cut କୁ ଯଥାକ୍ରମେ କମ୍, କଟ୍ ବୋଲି ଉଚ୍ଚାରଣ କରି ଆସିଛି ତାକୁ ପୁଣି କାମ୍ ଓ କାଟ୍ ଶିଖାଇବା ମୁସ୍କିଲ । ଠିକ୍ ସେଇଥି ପାଇଁ ଗତ କୋଡ଼ିଏ ବର୍ଷ ହେଲା ମୁଁ ସରକାରଙ୍କୁ ନିବେଦନ କରି ଆସୁଥିଲି ଯେ ଯଦି ଇଂରେଜ ଫୋନେଟିକସ୍ ଶିକ୍ଷାକଥା ଆଦୌ କଳ୍ପନା କରା ଯାଉଥାଏ ତାହେଲେ ଟ୍ରେନିଂ କଲେଜରେ ତାହାକୁ ବାଧ୍ୟତାମୂଳକ

ରଖାଯାଉ । କାରଣ ସେଠି ଟ୍ରେନିଂ ଛାତ୍ରମାନେ ଦୀର୍ଘ ବର୍ଷେ କାଳ ପ୍ରାକ୍‌ଟିସ୍ କରିବାର ସୁବିଧା ପାଇବେ ଓ ସେହିମାନେ ଯାଇ ସ୍କୁଲ ମାନଙ୍କରେ ମୂଳରୁ ଶୁଦ୍ଧ ଭାବରେ ପଢ଼ାଇଲେ ଉପରେ କିଛି ଅସୁବିଧା ହେବ ନାହିଁ । ବାସ୍ତବରେ ଯଦି ଟ୍ରେନିଂ କଲେଜ ଓ ଟ୍ରେନିଂ ସ୍କୁଲ ମାନଙ୍କରେ ସେତେବେଳେ ତାକୁ ପାଠ୍ୟ ରୂପେ ରଖି ଦିଆଯାଇ ଥାନ୍ତା ତା'ହେଲେ ବର୍ତ୍ତମାନ ଅନ୍ତତଃ କେତେ ହଜାର ଶିକ୍ଷକ ସ୍କୁଲମାନଙ୍କରେ ଫୋନେଟିକସ୍ ଶିକ୍ଷା ଦେଉ-ଥାନ୍ତେ ଓ ବର୍ତ୍ତମାନ କଲେଜ ସ୍ତରରେ ଆଉ କଷ୍ଟ କରିବା ପାଇଁ ପଡ଼ୁ ନ ଥାନ୍ତା । ତେବେ ଯେତେ ବିଳମ୍ବରେ ହେଉ ପଛେ ଇଂରେଜ ଉଚ୍ଚାରଣ ପଦ୍ଧତି ଦିନକୁ ଦିନ ଯେପରି ଖରାପ ଆଡ଼କୁ ଗତି କରୁଛି, ଆମେ ଯଦି ତାକୁ ଆଜି ରକ୍ଷା କରିବାକୁ ଚାହୁଁ ତାହେଲେ ଟ୍ରେନିଂ ସ୍କୁଲ ଓ ଟ୍ରେନିଂ କଲେଜ ସ୍ତରରେ ତାହା ସଙ୍ଗେ ସଙ୍ଗେ ଆରମ୍ଭ ହେବା ଦରକାର ।

ବର୍ତ୍ତମାନ କେତେକ ଟ୍ରେନିଂ ସ୍କୁଲ ଛାତ୍ର ଓ ଶିକ୍ଷକ ତଥା ଗ୍ରୀଷ୍ମ ଅନୁଷ୍ଠାନର କେତେକ ବନ୍ଧୁଙ୍କର ପ୍ରେରଣାରେ ଏହି ପୁସ୍ତକର ଦ୍ୱିତୀୟ ସଂସ୍କରଣ ପାଇଁ ମୁଁ ଉତ୍ସାହିତ ହେଲି । ଗତ ଦୁଇବର୍ଷ ହେଲା ପୁସ୍ତକଟି ଶେଷ ହୋଇ ଯାଇଥିଲେ ମଧ୍ୟ କେତେକ ଅନିବାର୍ଯ୍ୟ କାରଣରୁ ତାହା ପୁନର୍ବାର ମୁଦ୍ରିତ ହୋଇ ପାରି ନଥିଲା । ପୁଣି ଆବଶ୍ୟକତା ପଡ଼ିବାରୁ ତହିଁରେ କେତେକ ପରିବର୍ତ୍ତନ ସହ ଦ୍ୱିତୀୟବାର ମୁଦ୍ରିତ କରାଗଲା । 'ଫ୍ରେଣ୍ଡସ୍ ପବ୍ଲିଶର୍ସ'ର ପରିଚାଳକ ଶ୍ରୀ ସତ୍ୟଦେବ ପ୍ରଧାନ ପ୍ରକାଶନ ଦାୟିତ୍ୱ ସ୍ୱୀକାର କରିବାରୁ ତାଙ୍କୁ ଅଶେଷ ଧନ୍ୟବାଦ । ଯେଉଁ ପ୍ରିୟ ପାଠକମାନଙ୍କ ପ୍ରେରଣାରେ ଏହି ଦ୍ୱିତୀୟ ସଂସ୍କରଣ ସମ୍ଭବ ହେଲା ସେମାନଙ୍କ ପ୍ରତି ଗଭୀର କୃତଜ୍ଞତା ।

ଗଞ୍ଜେଇ ଉଦ
ଢେଙ୍କାନାଳ
ତା ୭-୭-୭୧

—ଲେଖକ—

## ଚିତ୍ରମାନଙ୍କର ସୂଚୀ

# ପ୍ରଥମ ପରିଚ୍ଛେଦ

## ବାଗ୍‌ଯନ୍ତ୍ର

ମନୁଷ୍ୟର କଥିତ ଭାଷା ତାହାର ମୁଖନିଃସୃତ ଧ୍ୱନିଦ୍ୱାରା ନିର୍ମିତ ହୋଇଥାଏ । ସେହି ଧ୍ୱନି ମୁଖଗହ୍ୱରରେ କିପରି ନିର୍ମିତ ହୁଏ, ଜାଣିବାକୁ ହେଲେ ଧ୍ୱନିନିର୍ମାଣରେ ସାହାଯ୍ୟ କରୁଥିବା ମୁଖ ଭିତରର ବିଭିନ୍ନ ବିଭାଗ ସହିତ ପରିଚିତ ହେବା ନିତାନ୍ତ ଦରକାର । ମନୁଷ୍ୟର କଥିତ-ଭାଷାର ବିଶ୍ଳେଷଣ ଧ୍ୱନିବିଜ୍ଞାନର ଅନ୍ତର୍ଭୁକ୍ତ । ତେଣୁ ଧ୍ୱନିବିଜ୍ଞାନ ସମ୍ପର୍କରେ ଯେ କୌଣସି ବିଷୟ ଅଧ୍ୟୟନ କରିବାକୁ ଗଲାବେଳେ ସର୍ବପ୍ରଥମେ ଉଚ୍ଚାରଣ ଯନ୍ତ୍ର ଅର୍ଥାତ୍ ବାଗ୍‌ଯନ୍ତ୍ର ସହିତ ସମ୍ୟକ୍‌ରୂପେ ପରିଚିତ ହେବା ଉଚିତ । ବାଗ୍‌ଯନ୍ତ୍ର କହିଲେ ସାଧାରଣତଃ ମୁଖରନ୍ଧ୍ରକୁ ବୁଝାଇଲେ ମଧ୍ୟ ଶ୍ୱାସନଳୀ ଏବଂ ଫୁସ୍‌ଫୁସ୍‌କୁ ତହିଁରେ ଅନ୍ତର୍ଗତ କରାଯାଇ ଥାଏ । କାରଣ ଫୁସ୍‌ଫୁସ୍‌ନିର୍ଗତ ବାୟୁଦ୍ୱାରାହିଁ ଆମମାନଙ୍କର ଭାଷା ତିଆରି ହୋଇଥାଏ । ଫୁସଫୁସରୁ ବାୟୁ ନିର୍ଗତ ହୋଇ ସର୍ବ-ପ୍ରଥମେ ସ୍ୱରଯନ୍ତ୍ରରେ ଆଘାତ ପାଏ । ସେଠାରୁ ମୁକ୍ତ ଲାଭକରି କଣ୍ଠ ଏବଂ ମୁଖରନ୍ଧ୍ର ପ୍ରବେଶ ଦେଇ ଓଠବାଟେ ତାହା ପଦାକୁ ବାହାରିଯାଏ । କେତେବେଳେ ଅବା ମୁଖରନ୍ଧ୍ର ବନ୍ଦ ଥିବାରୁ ତାହା ନାସାରନ୍ଧ୍ର ବାଟେ ବହିର୍ଗତ ହୁଏ । ପୃଥିବୀର ଅଧିକାଂଶ ଭାଷାର ଧ୍ୱନି ଉତ୍ପାଦନ ପାଇଁ ଫୁସ୍‌ଫୁସ୍‌ରୁ ମୁଖରନ୍ଧ୍ର ଦେଇ ବାହାରି ଯାଉଥିବା ପବନକୁ ବ୍ୟବହୃତ କରାଯାଏ । କିନ୍ତୁ ଆଫ୍ରିକାର କେତେକ ଭାଷାରେ ବାହାରୁ ମୁଖରନ୍ଧ୍ର ଭିତରକୁ ଯାଉଥିବା ପବନଦ୍ୱାରା ମଧ୍ୟ ଭାଷାଧ୍ୱନି ସୃଷ୍ଟି ହୋଇଥାଏ । ନିମ୍ନରେ ବାଗ୍‌ଯନ୍ତ୍ରର ଚିତ୍ର ଏବଂ ତହିଁରେ ସୂଚିତ ବିଭିନ୍ନ ବିଭାଗ ଦେଖନ୍ତୁ । ଦର୍ପଣ ସାମନାରେ ଆଁ କରି ମୁଖରନ୍ଧ୍ରର ବିଭିନ୍ନ ବିଭାଗକୁ ବାରମ୍ବାର ଦେଖି ମନେରଖିବା ଦରକାର । ଛୋଟପିଲା ଆଁ କରି କାନ୍ଦୁଥିଲା ବେଳେ ଭଲ ଭାବରେ ଦେଖିଲେ ମୁଖରନ୍ଧ୍ରର ଅନେକ ବିଭାଗ ସ୍ପଷ୍ଟ ଦେଖା ଯାଇପାରେ ।

୧ ଓଷ୍ଠ
୨ ଦନ୍ତ
୩ ବର୍ତ୍ସ
୪ କଠିନ ତାଳୁ
୫ କୋମଳ ତାଳୁ
୬ ଘଣ୍ଟିକା
୭ ଜିହ୍ୱାଗ୍ର
୮ ଜିହ୍ୱାଫଳକ
୯ ଜିହ୍ୱାମଧ୍ୟ(ଅଗ୍ରଜିହ୍ୱା)
୧୦ ଜିହ୍ୱାପଶ୍ଚାତ୍ (ପଶ୍ଚାଦ୍ ଜିହ୍ୱା)
୧୧ ଗଳଗହ୍ୱର
୧୨ ସ୍ୱରଯନ୍ତ୍ରା-ବରଣ
୧୩ ସ୍ୱରତନ୍ତ୍ରୀ-ମାନଙ୍କରସ୍ଥାନ
୧୪ ଶ୍ୱାସନଳୀ
୧୫ ନାସାରନ୍ଧ୍ର ମାର୍ଗ



ବାଗ୍‌ଯନ୍ତ୍ରର ବିଭିନ୍ନ ବିଭାଗ

୧ । **ଓଷ୍ଠ**—ଧ୍ୱନିବିଜ୍ଞାନ କ୍ଷେତ୍ରରେ ଓଷ୍ଠ କହିଲେ ବିଶେଷ ଭାବରେ ତଳ ଓଠ ବା ତଳ ଥୋଡ଼କୁ ବୁଝାଏ । ଅବଶ୍ୟ ସାଧାରଣ ଭାବରେ ଏହା ଉଭୟ ଓଠକୁ ବୁଝାଇ ଥାଏ ।

୨ । **ଦନ୍ତ**—ଦନ୍ତ କହିଲେ ଧ୍ୱନିବିଜ୍ଞାନରେ ବିଶେଷ ଭାବରେ ଉପର ପାଖର ସାମନା ଦାନ୍ତକୁ ବୁଝାଏ । ଅବଶ୍ୟ ସାଧାରଣ ଭାବରେ ଏହା ଯେ କୌଣସି ଦାନ୍ତକୁ ବୁଝାଇ ପାରେ ।

୩ । ବର୍ତ୍ସ—ଉପର ଦାନ୍ତର ତଳ ମାଢ଼ିକୁ ବୁଝାଏ । ଏହା ପାଟିଭିତରେ ଉପରଦାନ୍ତର ଠିକ୍ ଉପରକୁ ଲାଗି ରହିଥିବା ଅସମାନ ଅର୍ଥାତ୍ ଖଦଖଦିଆ ଅଂଶ ।

୪ । କଠିନତାଳୁ—ଉପର ଦାନ୍ତର ମାଢ଼ିଠାରୁ ଉପର ତାଳୁରେ ହାତ ମାରି ମାରି ଗଲେ ଯେଉଁ ପର୍ଯ୍ୟନ୍ତ ହାଡ଼ ଥିବାର ଜଣାପଡ଼ିଥାଏ, ସେହି ପର୍ଯ୍ୟନ୍ତ କଠିନତାଳୁ । କୋମଳ-ତାଳୁପରି ଏହା କେବେ ତଳ ଉପର ହୋଇ ପାରେ ନାହିଁ, ସର୍ବଦା ସ୍ଥିରଥାଏ ।

୫ । କୋମଳତାଳୁ—କଠିନତାଳୁ ସୀମାଠାରୁ ଘଣ୍ଟିକା ପର୍ଯ୍ୟନ୍ତ ବିସ୍ତୃତ ତାଳୁର କୋମଳ ଅଂଶ । ଏହା ତଳକୁ ଉପରକୁ ହୋଇପାରେ । ଏହା ତଳକୁ ଓହଳି ରହି ଥିଲାବେଳେ ନାସାରନ୍ଧ୍ର ମାର୍ଗ ଖୋଲାଥାଏ । କିନ୍ତୁ ଏହା ଉପରକୁ ଉଠିଗଲେ ନାସାରନ୍ଧ୍ର ମାର୍ଗ ବନ୍ଦ ହୋଇଯାଏ ।

୬ । ଘଣ୍ଟିକା—କୋମଳତାଳୁର ଶେଷ ଭାଗରେ ଗ୍ରୁପ୍ ବଲ୍‌ପରି ଓହଳିଥିବା ମାଂସପିଣ୍ଡୁଳା । ଶର୍ଦ୍ଦି ସମୟରେ ଏହା ବଢ଼ିଯାଏ ।

୭ । ଜିହ୍ୱାଗ୍ର--ଜିଭର ଅଗ ଟିପ ।

୮ । ଜିହ୍ୱାଫଳକ—ଯାହାକି ଇଂରେଜୀରେ rim of the tongue କୁହାଯାଏ । ଜିହ୍ୱାଗ୍ରର ଠିକ୍ ପଛକୁ ଲାଗିଥିବା ଅଂଶ । ପ୍ରାକୃତିକ ଭାବରେ ଜିଭର ଏହି ଅଂଶକୁ ଦାନ୍ତ ଆଗକୁ ବାହାର କରିପାରିବା । ମୁଖବିବରରେ ଜିଭ ପ୍ରାକୃତିକ ଅବସ୍ଥାରେ ଥିଲାବେଳେ ଜିଭର ଏହି ଭାଗ ବର୍ତ୍ସର ବିପରୀତରେ ଥାଏ ।

୯ । ଜିହ୍ୱାମଧ୍ୟ (ଅଗ୍ରଜିହ୍ୱା)—ଏହା ଜିହ୍ୱାଗ୍ରରୁ ଭିତରକୁ ଦେଢ଼ଇଞ୍ଚ ପର୍ଯ୍ୟନ୍ତ ବିସ୍ତୃତ । ଜିହ୍ୱା ପ୍ରାକୃତିକ ଅବସ୍ଥାରେ ମୁଖରନ୍ଧ୍ରରେ ଥିଲାବେଳେ ଏହା କଠିନତାଳୁର ବିପରୀତରେ ଥାଏ । ଇଂରେଜୀରେ ଏହାକୁ front of the tongue ବୋଲି କହନ୍ତି । ଏହାକୁ ଅଗ୍ର-ଜିହ୍ୱା କୁହାଯାଇପାରେ ।

୧୦ । ଜିହ୍ୱାପଶ୍ଚାତ—ଜିହ୍ୱାମଧ୍ୟଠାରୁ ଜିହ୍ୱାମୂଳ ପର୍ଯ୍ୟନ୍ତ ବିସ୍ତୃତ ଅଂଶ । ପ୍ରାକୃତିକ ଅବସ୍ଥାରେ ଏହା କୋମଳ ତାଳୁର ବିପରୀତରେ ଥାଏ । ଏହାକୁ ଇଂରେଜୀରେ back of the tongue ବୋଲି କହନ୍ତି । ଏହାକୁ ପଶ୍ଚଜିହ୍ୱା କୁହାଯାଇ ପାରେ ।

୧୧ । **ଗଳଗହ୍ୱର** —ଯାହାକୁ ଆମେ ସାଧାରଣତଃ ଗଳା କହୁ । ଜିହ୍ୱାମୂଳର ପଛ ଏବଂ କଣ୍ଠର ପଛ କାନ୍ଥର ମଧ୍ୟବର୍ତ୍ତୀ ସ୍ଥାନ ।

୧୨ । **ସ୍ୱରଯନ୍ତ୍ରାବରଣ**—ଗଳଗହ୍ୱରର ତଳକୁ ଗୁମଟ କିମ୍ବା ଗଛର ଖୁଣ୍ଟାପରି ଠିଆ ହୋଇଥିବା ଏକ ଅଂଶ । ଏହା ଆବଶ୍ୟକ ବେଳେ ନଇଁପଡ଼ି ସ୍ୱରଯନ୍ତ୍ରସ୍ଥ ସ୍ୱରତନ୍ତ୍ରୀମାନଙ୍କୁ ସୁରକ୍ଷିତ କରିଥାଏ । ଭୋଜନ କରିବା ସମୟରେ ଏହା ନଇଁ ପଡ଼ି ଖାଦ୍ୟକୁ ଖାଦ୍ୟନଳୀ ଭିତରକୁ ପଠାଇ ଦିଏ ତେଣୁ ଖାଦ୍ୟ ଶ୍ୱାସନଳୀ ଭିତରେ ପ୍ରବେଶ କରିପାରେ ନାହିଁ ।

୧୩ । **ସ୍ୱରତନ୍ତ୍ରୀମାନଙ୍କର ସ୍ଥାନ ବା ସ୍ୱରପେଟିକା**—ଏହି ସ୍ଥାନରେ ଦୁଇଟି ସ୍ୱରତନ୍ତ୍ରୀ ଥା'ନ୍ତି । ଗୋଟିଏ ଥେଟର ଷ୍ଟେଜର ଦୁଇଟି ପରଦାପରି ଏହି ସ୍ୱରତନ୍ତ୍ରୀ ଦୁଇଟି ସ୍ୱରଯନ୍ତ୍ର ଦେହରେ ଥା'ନ୍ତି । ଆମ ବେକରେ କଣ୍ଠା ବୋଲି ଯେଉଁ ଜିନିଷଟି ଆଗକୁ ବାହାରି ପଡ଼ିଲା ପରି ରହିଥାଏ ତାକୁ ସ୍ୱରଯନ୍ତ୍ର ବା ସ୍ୱରପେଟିକା କୁହାଯାଏ । ତାର ଭିତରେ ତନ୍ତୁନିର୍ମିତ ସ୍ୱରତନ୍ତ୍ରୀ ଦୁଇଟି ପରଦା ଭଳି ପରସ୍ପରର ବିପରୀତରେ ଥା'ନ୍ତି । ନିଶ୍ୱାସ ଗ୍ରହଣ କଲାବେଳେ ସେ ଦୁଇଟି ସଂପୂର୍ଣ୍ଣରୂପେ ଖୋଲା ହୋଇ ରହିଥା'ନ୍ତି । କିନ୍ତୁ କଥାବାର୍ତ୍ତା କଲାବେଳେ ଏବଂ ଗୀତ ଗାଇଲା ବେଳେ ଧ୍ୱନି ଉତ୍ପନ୍ନ କରିବାପାଇଁ ସେମାନେ ପରସ୍ପର ନିକଟବର୍ତ୍ତୀ ହୁଅନ୍ତି । ଫୁସ୍‌ଫୁସ୍ ଦେହରୁ ଆସୁଥିବା ପବନ ଆଘାତରେ ସେହି ସ୍ୱରତନ୍ତ୍ରୀମାନଙ୍କର କୋମଳ ଧାର ଥରି ଉଠିଲେ ଯେଉଁ ଧ୍ୱନି ହୁଏ ତାକୁ ଆମେ ସଘୋଷ ଧ୍ୱନି କହୁ । ଗ, ଜ, ଡ, ଦ, ବ, ପ୍ରଭୃତି ଉଚ୍ଚାରଣ କଲାବେଳେ ସ୍ୱରତନ୍ତ୍ରୀରେ ଏହି ପ୍ରକାର କମ୍ପନ ହୁଏ ବୋଲି ସେହି ଧ୍ୱନିମାନଙ୍କୁ **ସଘୋଷ** କୁହାଯାଏ । କିନ୍ତୁ କ, ଚ, ଟ, ତ, ପ, ଖ, ଛ, ଠ, ଥ, ଫ ପ୍ରଭୃତି ଧ୍ୱନି ଉଚ୍ଚାରଣବେଳେ ସ୍ୱରତନ୍ତ୍ରୀରେ କମ୍ପନ ନ ଥିବାରୁ ସେହି ଧ୍ୱନିମାନଙ୍କୁ **ଅଘୋଷ** କୁହାଯାଏ । ଏହି ମାନଙ୍କର ଉଚ୍ଚାରଣ ସମୟରେ ସ୍ୱରତନ୍ତ୍ରୀ ଦୁଇଟି ପରସ୍ପରଠାରୁ ଦୂରେଇ ରହିଥା'ନ୍ତି । ପାଣି ପିଇବା ବେଳେ ଦର୍ପଣରେ ଦେଖିଲେ ସ୍ୱରପେଟିକାର ସ୍ଥିତି ଜଣାପଡ଼େ ।

୧୪ । **ଶ୍ୱାସନଳୀ**—ଫୁସ୍‌ଫୁସ୍‌ଠାରୁ ସ୍ୱରଯନ୍ତ୍ର ପର୍ଯ୍ୟନ୍ତ ବାୟୁ ଯିବା ଆସିବା ପାଇଁ ଏକମାତ୍ର ନଳୀ । ଏହାର ମଧ୍ୟ ଦେଇ ଫୁସ୍‌ଫୁସ୍ ନିର୍ଗତ ଶ୍ୱାସବାୟୁ ଯାତାୟତ କରେ ।

୧୫ । **ନାସାରନ୍ଧ୍ର ମାର୍ଗ**—ଗଳଗହ୍ୱରଠାରୁ ସିଧା ଉପରକୁ ଏକ ଖୋଲା ରାସ୍ତା । ଏହା ଭିତର ଦେଇ ପବନ ନାକବାଟେ ବାହାରେ । କୋମଳତାଳୁକୁ ଉପରକୁ ଉଠାଇ ଏହି ରାସ୍ତାକୁ ବନ୍ଦ କରିଯାଇପାରେ ଏବଂ ତାହାକୁ ତଳକୁ କରି ଏହି ରାସ୍ତାକୁ ଖୋଲା ରଖାଯାଇ ପାରେ ।




ଶ୍ୱାସନଳୀ ଓ ସ୍ୱରଯନ୍ତ୍ରର ସ୍ଥାନ । ସଘୋଷ ଓ ଅଘୋଷ ଧ୍ୱନି ଉଚ୍ଚାରଣରେ ସ୍ୱରତନ୍ତ୍ରୀ-ମାନଙ୍କର ଅବସ୍ଥା ।

**ଟିପ୍ପଣୀ**—ମନେ ରଖିବାକୁ ହେବ, ଉପରେ ଯେଉଁ ବିଭିନ୍ନ ବିଭାଗ କରାଯାଇଛି, ତାହା କୃତ୍ରିମ । ଧ୍ୱନି ଶିକ୍ଷାବେଳେ ବର୍ଗର ଆଲୋଚନା କରିବା ପାଇଁ ସହଜ ହେବ ବୋଲି ଏଭଳି ବୈଜ୍ଞାନିକ ବିଭାଗ କରାଯାଇ ପ୍ରତ୍ୟେକ ବିଭାଗକୁ ଗୋଟିଏ ଗୋଟିଏ ନାମ ଦିଆଯାଇଛି ।

ବିଦେଶୀ ଭାଷାର ଧ୍ୱନି ଶିଖିଲା ବେଳେ କେତୋଟି କଥା ମନେ ରଖିବାକୁ ହେବ । ପ୍ରଥମେ ଧ୍ୱନି ଉଚ୍ଚାରଣ ପଦ୍ଧତିକୁ ବହିରୁ ପଢ଼ି ଉଚ୍ଚାରଣ କଲାବେଳେ ମୁହଁକୁ ବାରମ୍ବାର ଦର୍ପଣରେ ଦେଖିବାକୁ ହୁଏ । ଚିତ୍ରରେ ଯେଉଁ ଧ୍ୱନି ପାଇଁ ଯେଉଁ ଯୋଜସନ ଦେଖାଇ ଦିଆଯାଇଥାଏ, ଠିକ୍ ସେହି ଯୋଜସନରେ ବାଗ୍‌ଯନ୍ତ୍ର ରହୁଛି କି ନାହିଁ ପରୀକ୍ଷା କରି ଧ୍ୱନି ଉଚ୍ଚାରଣ କରିବାକୁ ହୁଏ ।

କୌଣସି ଭାଷାଶିକ୍ଷା କଲାବେଳେ ସେହି ଭାଷାରେ ରେକର୍ଡ଼ ଶୁଣିପାରିଲେ ବହୁତ ଉପକାର ହୁଏ । ବାରମ୍ବାର ଶୁଣି ଶୁଣି ତାହା ସ୍ମୃତିପଟରେ ଆଙ୍କି ହୋଇଯାଏ । ଇଂରେଜ ଧ୍ୱନିଶିକ୍ଷା ପାଇଁ ବମ୍ବେ ଲିଙ୍ଗୁଆଫୋନ୍ ଅନୁଷ୍ଠାନରୁ ଇଂରେଜ ରେକର୍ଡ ମିଳିପାରିବ । ସେହି ରେକର୍ଡ଼କୁ ବାରମ୍ବାର ଶୁଣି ସେଥିରେ ଥିବା ଶବ୍ଦମାନଙ୍କୁ ବାରମ୍ବାର ଉଚ୍ଚାରଣ କରି କେତେ ଦୂର ସଫଳତା ହେଉଛି ଦେଖିବାକୁ ହେବ । ଇଂରେଜ ଧ୍ୱନିମାନଙ୍କର ପ୍ରାଥମିକ ଶିକ୍ଷା ହୋଇଯିବା ପରେ ରେଡ଼ିଓରୁ ବି. ବି. ସି. ପ୍ରୋଗ୍ରାମ ନିୟମିତ ଭାବରେ ଶୁଣିଲେ ଇଂରେଜ ଧ୍ୱନିତତ୍ତ୍ୱର ଅନେକ ବିଷୟ ବୁଝି ହୋଇଯିବ । ଯଦି ଆକାଶବାଣୀ ସ୍କୁଲମାନଙ୍କ ପାଇଁ ଏକ ନିୟମିତ ଇଂରେଜ ଉଚ୍ଚାରଣ ଶିକ୍ଷା ପ୍ରୋଗ୍ରାମ ଚାଲୁ ରଖନ୍ତେ, ତେବେ ଅନେକ ସୁବିଧା ହୁଅନ୍ତା, କିନ୍ତୁ ବର୍ତ୍ତମାନ ମଝିରେ ମଝିରେ ଯାହା କରାଯାଉଛି ତା'ର କୌଣସି ପ୍ରଭାବ ପଡ଼ୁଛି ବୋଲି ମନେ ହୁଏ ନାହିଁ । ହିନ୍ଦୀ ପାଇଁ ସପ୍ତାହରେ ପାଞ୍ଚ ଦିନ ପ୍ରୋଗ୍ରାମ ହେଉଛି; ଇଂରେଜ ପାଇଁ ଦିନେ ଦୁଇଦିନ କଲେ ମନ୍ଦ ହୁଅନ୍ତା ନାହିଁ । ଏହି ସମ୍ପର୍କରେ ବି. ବି. ସି. ଅନୁଷ୍ଠାନର 'Listen and speak' କାର୍ଯ୍ୟକ୍ରମ ଶୁଣିଲେ ବିଶେଷ ଲାଭ ହେବ । କିନ୍ତୁ ରେକର୍ଡ ଇତ୍ୟାଦି ଶୁଣିବା ପୂର୍ବରୁ ଧ୍ୱନିତତ୍ତ୍ୱକୁ ନ ବୁଝିଥିଲେ ବିଶେଷ କିଛି ଲାଭ ହୁଏନାହିଁ ବରଂ ଅଯଥା ଗୋଲକଧନ୍ଦା ସୃଷ୍ଟିହୁଏ ।

ଅନେକ ସମୟରେ ଗୋଟିଏ ଶବ୍ଦକୁ ଏକାଥରକେ ଉଚ୍ଚାରଣ କରିବା କଷ୍ଟସାଧ୍ୟ ହୁଏ । ସେପରିସ୍ଥଳେ ତାହାକୁ ଭାଗ ଭାଗ କରି ପ୍ରତ୍ୟେକ ଭାଗକୁ ଉଚ୍ଚାରଣ କରି ଶିଖିବା ଉଚିତ । ତା'ପରେ ସମସ୍ତ ଭାଗକୁ ଏକତ୍ର କରି ସମୁଦାୟ ଶବ୍ଦକୁ ଉଚ୍ଚାରଣ କଲେ ଉଚ୍ଚାରଣ ଶିକ୍ଷା

ସହଜ ହୁଏ । କୌଣସି ଧ୍ୱନି ବା ଶବ୍ଦର ଉଚ୍ଚାରଣ ଅଭ୍ୟାସ କଲାବେଳେ ଯଦି ଅନେକ ଥର ଉଚ୍ଚାରଣ କରି କରି ବାଗ୍‌ଯନ୍ତ୍ରରେ କ୍ଳାନ୍ତି ଅନୁଭୂତହୁଏ, ତେବେ ଅଭ୍ୟାସକୁ କିଛି ସମୟ ସ୍ଥଗିତ ରଖି ଘଣ୍ଟାଏ ଦୁଇଘଣ୍ଟା ପରେ ପୁଣି ଆଉଥରେ ଅଭ୍ୟାସ ଆରମ୍ଭ କଲେ ଫଳ ଭଲହୁଏ ।

ଇଂରେଜୀ ଉଚ୍ଚାରଣ ଶିକ୍ଷା କଲାବେଳେ ପାଖରେ ଗୋଟିଏ ଇଂରେଜୀ ଉଚ୍ଚାରଣ ଶବ୍ଦକୋଷ (An English Pronouncing Dictionary, Daniel Jones) ରଖି ସନ୍ଦେହ ସ୍ଥଳମାନ ବାରମ୍ବାର ଦେଖି ନେବା ଉଚିତ । ଅବଶ୍ୟ ଏହି ପ୍ରକାର ଚେଷ୍ଟା ଅନେକ ସମୟରେ ବିରକ୍ତିକର । ହୁଏତ ଗୋଟାଏ ପୃଷ୍ଠା ପଢୁ ପଢୁ ଶବ୍ଦକୋଷରୁ ଆଠ ଦଶଟା ଶବ୍ଦ ଦେଖିବାକୁ ପଡ଼ିପାରେ । ମାତ୍ର ଦୁଇ ତିନି ମାସ ଏପରି କଷ୍ଟ କରିଦେଲେ ତାପରେ ଉଚ୍ଚାରଣ ଆୟତ୍ତ ହୋଇଯାଏ । ଲେଖକ ଲଣ୍ଡନ ସ୍କୁଲରେ ଛାତ୍ର ଥିଲାବେଳେ ଠିକ୍ ଏହି ପନ୍ଥା ଅନୁସରଣ କରି ଲାଭବାନ୍ ହୋଇଥିଲେ । ଅବଶ୍ୟ ଏପରି କରିବା ପାଇଁ ଧୈର୍ଯ୍ୟ ଦରକାର ।

୨



## ଦ୍ୱିତୀୟ ପରିଚ୍ଛେଦ

### ଇଂରେଜି ସ୍ୱର

ଯେ କୌଣସି ଭାଷା ଶିଖିବାକୁ ଗଲାବେଳେ ଆମକୁ ପ୍ରଥମେ ସେହି ଭାଷାର ଧ୍ୱନିମାନଙ୍କୁ ଶିଖିବାକୁ ପଡ଼େ । କୌଣସି ଭାଷାକୁ ଲେଖି ନ ଜାଣି ମଧ୍ୟ ମନୁଷ୍ୟ ସେହି ଭାଷାର ଧ୍ୱନିମାନଙ୍କ ସହିତ ପରିଚିତ ହୋଇପାରେ । ଶିଶୁ କିମ୍ବା ଅଶିକ୍ଷିତ ଲୋକେ ଭାଷା କହନ୍ତି ଅଥଚ ଲେଖି ଜାଣନ୍ତି ନାହିଁ । କହି ପାରିବାଟା ଜନ୍ମଗତ ତଥା ପ୍ରାକୃତିକ ଅଧିକାର । ଲେଖି ପାରିବାଟା ଜନ୍ମଗତ ନୁହେଁ, ବରଂ ମନୁଷ୍ୟ କୃତ ଏକ କୃତ୍ରିମ ଅଧିକାର । କିନ୍ତୁ ମନୁଷ୍ୟ ଲେଖିଲାବେଳେ କରେ କ'ଣ ? ଯେଉଁ ଧ୍ୱନି ସେ ପାଟିରେ କହେ, ସେହି ଧ୍ୱନିକୁ ଚିହ୍ନ କିମ୍ବା ଅକ୍ଷରଦ୍ୱାରା ଲେଖେ । ଆମେ ଓଡ଼ିଆ, ଇଂରେଜି, ହିନ୍ଦୀ ଆଦି ଭାଷାକୁ ଅକ୍ଷର ସାହାଯ୍ୟରେ ଲେଖୁ, କିନ୍ତୁ ଚୀନ ଦେଶର ଲୋକେ ସ୍ୱତନ୍ତ୍ର ଚିହ୍ନ କାଟି ଲେଖନ୍ତି । ଆମେ ଗୋଟିଏ ଧ୍ୱନି ଉଚ୍ଚାରଣ କଲାବେଳେ ଗୋଟିଏ ଅକ୍ଷର ଲେଖୁ । ଉଦାହରଣ ସ୍ୱରୂପ ( ଅ ) ଧ୍ୱନିକୁ ପାଟିରେ ଉଚ୍ଚାରଣ କରି ଅକ୍ଷରରେ ଅ ଲେଖୁ, ସେହିପରି ( କ, ଚ, ବ ) ଇତ୍ୟାଦି ଧ୍ୱନି ଉଚ୍ଚାରଣ କଲାବେଳେ କ, ଚ, ବ ଇତ୍ୟାଦି ଅକ୍ଷର ଲେଖୁ । ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, କୌଣସି ଭାଷାରେ ଯେତେ ସାର୍ଥକ ଧ୍ୱନି ଅଛି, ସେତିକି ଅକ୍ଷର ରହିଲେ ଗୋଟିଏ ଧ୍ୱନି ପାଇଁ ଗୋଟିଏ ଅକ୍ଷର ମାଧ୍ୟମରେ ଲେଖାଯାଇ ପାରିବ । ଲେଖିଲା ବେଳେ ଆଉ ଭୁଲବାଟକୁ ଯିବାର ଆଶଙ୍କା ରହିବ ନାହିଁ । କିନ୍ତୁ ଗୋଟିଏ-ଧ୍ୱନିକୁ-ଗୋଟିଏ-ଅକ୍ଷର ବ୍ୟବସ୍ଥା କ'ଣ କୌଣସି ଭାଷାରେ ଅଛି ? ଆଶ୍ଚର୍ଯ୍ୟର କଥା ଏ ପ୍ରକାର ବ୍ୟବସ୍ଥା କୌଣସି ଜଣାଶୁଣା ଭାଷାରେ ପୂର୍ଣ୍ଣରୂପେ ନାହିଁ । ଉଦାହରଣ ସ୍ୱରୂପ ଓଡ଼ିଆ ଭାଷା କଥା ଦେଖାଯାଉ । ଓଡ଼ିଆରେ [ ଜ ] ଧ୍ୱନି ଉଚ୍ଚାରଣ କଲେ ମିଳାଏ କିମ୍ବା ଅଳ୍ପ ଶିକ୍ଷିତ ଲୋକେ ଦୁଇ ପ୍ରକାର ଲେଖିବାକୁ ଚେଷ୍ଟା କରିଥାନ୍ତି, ଯଥା ଜ ଓ ଯ । 'ଯମ' କହିଲେ କିଏ 'ଜମ' ଲେଖେ ତ କିଏ 'ଯମ' ଲେଖେ । କଲେଜ ପଢ଼ୁଆ ପିଲା ପର୍ଯ୍ୟନ୍ତ ବେଳେ ବେଳେ 'ଯିବା'କୁ 'ଜିବା' ବୋଲି ଲେଖନ୍ତି ।

ଯେମିତ (ସ) ଉଚ୍ଚାରଣ କଲେ ପିଲାଏ ମନ ଇଚ୍ଛା ଛଅଟି ସ, ଷ, ଶ, ଅକ୍ଷରରୁ ଯେ କୌଣସି ଗୋଟିଏ ଲେଖନ୍ତି । ଉଦାହରଣ ସ୍ୱରୂପ 'ଶାଶୁ' କହିଲେ କେହି 'ସାଷୁ' ଲେଖି ପାରନ୍ତି, 'ଶୀଘ୍ର' କହିଲେ କେହି 'ସିଘ୍ର' ବୋଲି ଲେଖି ପାରନ୍ତି । ମୋଟ କଥା ହେଲା, ଯେ କୌଣସି ଭାଷାରେ ଗୋଟିଏ-ଧ୍ୱନିକୁ-ଗୋଟିଏ-ଅକ୍ଷର ବ୍ୟବସ୍ଥା ନ ହୋଇ ଗୋଟିଏ ଧ୍ୱନି ପାଇଁ ଏକାଧିକ ଅକ୍ଷର ବ୍ୟବସ୍ଥା ହେଲେ ଅସୁବିଧା ନିଶ୍ଚୟ ହେବ । ଏଠି ଓଡ଼ିଆରେ ଯେଉଁ ଅବ୍ୟବସ୍ଥା ଆମେ ଦେଖିଲେ ତାହା ହେଉଛି **ଏକ-ଧ୍ୱନିକୁ-ବହୁ-ଅକ୍ଷର** ।

ଇଂରେଜୀରେ କିନ୍ତୁ ଠିକ୍ ଯା'ର ଓଲଟା । ସେଥିରେ କମ୍ ଅକ୍ଷରକୁ ବହୁତ ଧ୍ୱନି । ଅର୍ଥାତ୍ ଇଂରେଜୀରେ ଯେତେ ଧ୍ୱନି ଅଛି, ସେତେ ଅକ୍ଷର ନାହିଁ । ତେଣୁ ଗୋଟିଏ ଅକ୍ଷର ସାହାଯ୍ୟରେ ଏକାଧିକ ଧ୍ୱନିକୁ ଚିହ୍ନିତ କରିବାକୁ (ଲେଖିବାକୁ) ପଡ଼େ । ଯେଉଁମାନେ କହନ୍ତି, ଇଂରେଜୀ ଗୋଟିଏ ସହଜ ଭାଷା, ସେଥିରେ ମୋଟେ ଛବିଶଟି ଅକ୍ଷର, ସେମାନେ ଜାଣନ୍ତି ନାହିଁ, **ଏହି ଅଳ୍ପ ଅକ୍ଷରହିଁ ଇଂରେଜି ଭାଷାର ଚରମ ଦୁର୍ଦ୍ଦଶା** । ଏଇଥି ପାଇଁ ଇଂରେଜୀ ଲେଖା ବିଜ୍ଞାନସମ୍ମତ ନୁହେଁ ଓ ପ୍ରଥମ ପୃଥିବୀଯୁଦ୍ଧ ପରେ ଇଂରେଜ ଭାଷାକୁ ଆନ୍ତର୍ଜାତିକ ଭାଷାରୂପେ ଗ୍ରହଣ କରିବା ପାଇଁ ସବୁ ବ୍ୟବସ୍ଥା ହୋଇ ସାରିଥିଲେ ମଧ୍ୟ କେବଳ ଏହି ଦୋଷ ପାଇଁ ତାହା ସମ୍ଭବ ହେଲା ନାହିଁ । ଗୋଟିଏ ଅକ୍ଷରକୁ ବହୁତ ଧ୍ୱନି ହେଲେ କି ପ୍ରକାର ଅସୁବିଧା ହୁଏ, ଦେଖନ୍ତୁ । ଓଡ଼ିଆରେ ଅ ଲେଖାହେଲେ ଆମେ (ଅ) ବୋଲି ପଢ଼ୁ କିନ୍ତୁ ଇଂରେଜୀରେ a ଲେଖା ହେଲେ କେତେ ପ୍ରକାର କରି ପଢ଼ୁ, ଦେଖନ୍ତୁ ।

| ଅକ୍ଷର | ଶବ୍ଦ | ଉଚ୍ଚାରଣ | ଓଡ଼ିଆ ଅକ୍ଷରରେ ଉଚ୍ଚାରଣର ନିକଟତମ ରୂପ |
|---|---|---|---|
| A | any | eni | ଏନି |
| | act | ækt | ଆକ୍ଟ୍ |
| | about | ə'baut | ଅବାଉଟ୍ |
| | made | meid | ମେଇଡ୍ |
| | water | wɔ:tə | ଓ୍ୱାଟା |

ଏହିପରି ଉଦାହରଣ ଆହୁରି ଅନେକ ଦିଆ ଯାଇପାରେ । କିନ୍ତୁ ଫୋନେଟିକ୍ ଅକ୍ଷର ବେଶି ବ୍ୟବହାର ନ କରିବା ପାଇଁ ଉଦାହରଣ କମ୍ ଦିଆଯାଇଛି । ଅଧିକ ଉଦାହରଣ ଲୋଡ଼ିଲେ father, chalk, care ପ୍ରଭୃତି ଶବ୍ଦମାନଙ୍କର ଉଚ୍ଚାରଣ ଡାନିୟଲ ଜୋନସ୍ଙ୍କ ଇଂରେଜୀ ଉଚ୍ଚାରଣ ଅଭିଧାନରୁ ଦେଖନ୍ତୁ । ଇଂରେଜୀର ଏହି ଅବ୍ୟବସ୍ଥାକୁ ଆମେ **ଏକ-ଅକ୍ଷରକୁ-ବହୁ ଧ୍ୱନି** ଅବ୍ୟବସ୍ଥା ବୋଲି କହିବା ଅର୍ଥାତ୍ ଗୋଟିଏ ଅକ୍ଷର a ର ଉଚ୍ଚାରଣରୂପ ଅନ୍ତତଃ ପାଞ୍ଚ, ଯଥା—e, æ, ə, ei, ɔ:

**ଟିପ୍ପଣୀ**—ଧ୍ୱନିକୁ ଅକ୍ଷରଠାରୁ ଭିନ୍ନ ଦେଖାଇବା ପାଇଁ ଧ୍ୱନିବିଜ୍ଞାନ ପୁସ୍ତକରେ ଗୁଣ୍ଡିକୋଣିଆ ବନ୍ଧନୀ ବ୍ୟବହାର କରାଯାଇଥାଏ । ଉଦାହରଣ ସ୍ୱରୂପ ଧ୍ୱନିକୁ ଅ ଅକ୍ଷରଠାରୁ ଭିନ୍ନ ଦେଖାଇବା ପାଇଁ [ ଅ ] ପରି ଲେଖାଯାଏ । ମାତ୍ର ମୁଦ୍ରଣ ସୁବିଧା ପାଇଁ ଉକ୍ତ ବନ୍ଧନୀକୁ ଏହି ପୁସ୍ତକରେ ବିଶେଷ ବ୍ୟବହାର କରାଯାଇ ନାହିଁ । ନଚେତ eni, ækt, ə'baut, meid, ଓ wɔ:tə କୁ (əni) (ækt) (ə'baut) (meid) ଓ (wɔ:tə) ଏହିପରି ବନ୍ଧନୀ ମଧ୍ୟରେ ଲେଖା ଯାଇଥାନ୍ତା । ଫୋନେଟିକ୍ ଅକ୍ଷରରେ ଲେଖିଲା ବେଳେ ସେହି ବନ୍ଧନୀ ଲେଖିବାକୁ ଅଭ୍ୟାସ ରଖିବା ନିତାନ୍ତ ଦରକାର ।

ଉଚ୍ଚାରଣର ନିକଟତମ ରୂପ କହିବାର ଉଦ୍ଦେଶ୍ୟ ହେଉଛି ଓଡ଼ିଆ ଅକ୍ଷରରେ ଇଂରେଜୀ ଉଚ୍ଚାରଣକୁ ଯଥାର୍ଥ ଅଧିକ ସଠିକ୍ ଲେଖିବାକୁ ଗଲେ ଅନେକ ଅସୁବିଧା ହେବ । ତେଣୁ ଯେଉଁମାନେ ଇଂରେଜୀର ସଠିକ୍ ଉଚ୍ଚାରଣ ଆଦୌ ଜାଣନ୍ତି ନାହିଁ, କିମ୍ବା ଫୋନେଟିକ୍ସ ଅକ୍ଷରର ଉଚ୍ଚାରଣ ଜାଣନ୍ତି ନାହିଁ, ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଓଡ଼ିଆ ଅକ୍ଷରରେ ନିକଟତମ ଉଚ୍ଚାରଣ ଦିଆ ଯାଇଛି; ନଚେତ୍ ଏପରି ନିକଟତମ ରୂପ ଦେବା ବୈଜ୍ଞାନିକସମ୍ମତ ନୁହେଁ । ମାତ୍ର ଶିକ୍ଷା ଦେଲାବେଳେ ସମ୍ପୂର୍ଣ୍ଣ ବୈଜ୍ଞାନିକ ନ ହେଲେ ମଧ୍ୟ କେତେକ ମଝି ମଝିଆ ସମାଧାନ ସ୍ୱୀକାର କରି ଯାଇଥାଏ । ଏଠାରେ ତାହାହିଁ କରି ଯାଇଛି ।

———

# ଇଂରେଜୀ ସ୍ୱର

ଇଂରେଜୀ ଭାଷାରେ କେତୋଟି ସ୍ୱର ଅଛି, ପଚାରିଲେ ସାଧାରଣତଃ ଛାତ୍ରମାନେ କହନ୍ତି ପାଞ୍ଚଟି; ଯଥା: — a, e, i, o, u । ଏହାର କାରଣ ହେଉଛି, ଜବାବ ଦେଲାବେଳେ ସେମାନେ ଇଂରେଜୀ ସ୍ୱରଅକ୍ଷର ପ୍ରତି ଧ୍ୟାନ ଦେଇଥାନ୍ତି, ସ୍ୱରଧ୍ୱନି ପ୍ରତି ମୋଟେ ଦୃଷ୍ଟି ଦେଇ ନ ଥାନ୍ତି । ପୂର୍ବେ ଆମେ ଦେଖିଛେ, କେବଳ ଇଂରେଜୀ a ଅକ୍ଷରକୁ ଆମେ ( e, æ, ə, ei ଓ ɔ: ) ଭାବରେ ଉଚ୍ଚାରଣ କରିପାରୁ । ତେଣୁ ସାଧାରଣତଃ ଇଂରେଜୀରେ ପାଞ୍ଚଟି ସ୍ୱର ଅଛି ବୋଲି ଯାହା କୁହାଯାଏ, ତାହା ସମ୍ପୂର୍ଣ୍ଣ ଭୁଲ । ବାସ୍ତବରେ ଇଂରେଜୀରେ **ଏକୋଇଶଟି** ସ୍ୱର ଅଛି । ଫୋନେଟିକ ଅକ୍ଷରରେ ଲେଖିଲେ ସେଗୁଡିକ ନିମ୍ନଲିଖିତ ପ୍ରକାରରେ ଦେଖାଯାନ୍ତି । ୧ ରୁ ୧୨ ପର୍ଯ୍ୟନ୍ତ ସ୍ୱରମାନଙ୍କୁ ଶୁଦ୍ଧସ୍ୱର କୁହାଯାଏ ଏବଂ ୧୩ ରୁ ୨୧ ପର୍ଯ୍ୟନ୍ତ ସ୍ୱରମାନଙ୍କୁ ସଂଯୁକ୍ତ ସ୍ୱର କୁହାଯାଏ । ଧ୍ୱନିତତ୍ତ୍ୱ ଜୋନ୍ସ ତାଙ୍କ ଅଭିଧାନର ନୂତନ ସଂସ୍କରଣରେ ୨୪ଟି ସ୍ୱର ଉଲ୍ଲେଖ କରିଥିଲେ ମଧ୍ୟ ଆମମାନଙ୍କ ପାଇଁ ୨୧ଟି ଉଚ୍ଚାରଣ ଶିକ୍ଷା ଷ୍ଟାଣ୍ଡାର୍ଡ଼ ଇଂରେଜୀ ବୁଝିବା ପାଇଁ ପର୍ଯ୍ୟାପ୍ତ ବୋଲି କହିଛନ୍ତି । ତେଣୁ ଏଠି ୨୧ଟି ସ୍ୱର ଦିଆଯାଇଛି ।

## ଶୁଦ୍ଧ ସ୍ୱର ( Pure vowels )

ତେଣୁ ଏଠି ୨୧ଟି ସ୍ୱର ଦିଆଯାଇଛି ।

| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ | ୧୧ | ୧୨ |
|---|---|---|---|---|---|---|---|---|---|---|---|
| i: | i | e | æ | ɑ: | ɔ | ɔ: | u | u: | ʌ | ə: | ə |

## ସଂଯୁକ୍ତ ସ୍ୱର ( Dipthongs )

| | | | | |
|---|---|---|---|---|
| ୧୩ | ୧୪ | ୧୫ | ୧୬ | ୧୭ |
| ei | ou | ai | au | ɔi |
| ୧୮ | ୧୯ | ୨୦ | ୨୧ | |
| iə | ɛə | cə | uə | |

ଯେଉଁ ଯେଉଁ ଶବ୍ଦରେ ଏହି ଧ୍ୱନି ଗୁଡ଼ିକ ଅଛନ୍ତି, ସେମାନଙ୍କ ମଧ୍ୟରୁ ପ୍ରତ୍ୟେକରୁ ଗୋଟିଏ ଲେଖା ନମୁନା ତଳେ ଦିଆ ଯାଉଛି । ଯେଉଁ ଯେଉଁ ଧ୍ୱନି ନିକଟରେ ଦୁଇଟି ବିନ୍ଦୁ : ଲଗା ଯାଇଛି, ତାହାକୁ ଦୀର୍ଘ ଧ୍ୱନି ବୋଲି ବୁଝିବାକୁ ହେବ । ଓଡ଼ିଆ ୀ ( ଈ ମାତ୍ରା)କୁ ଏଠାରେ ଦୀର୍ଘ ଉଚ୍ଚାରଣ ପାଇଁ ଏବଂ ି ( ହ୍ରସ୍ୱ ଇ ମାତ୍ରା)କୁ ହ୍ରସ୍ୱ ଉଚ୍ଚାରଣ ପାଇଁ ଗ୍ରହଣ କରାଯାଇଛି । ସେହିପରି ୂ ( ଊ ) ଓ ୁ ( ଉ ) ର ଉଚ୍ଚାରଣକୁ ଯଥାକ୍ରମେ ଦୀର୍ଘ ଓ ହ୍ରସ୍ୱ ବୋଲି ଗ୍ରହଣ କରା ଯାଇଛି । ଦୀର୍ଘ ଆ କୁ ଆଆ ବୋଲି ଏବଂ ଦୀର୍ଘ ଅ କୁ ଅଅ ବୋଲି ଲେଖା ଯାଇଛି ।

| ନମ୍ବର | ଧ୍ୱନି | ଇଂରେଜି ଶବ୍ଦ | ଠିକ ଉଚ୍ଚାରଣ | ଓଡ଼ିଆ ଅକ୍ଷରରେ ଉଚ୍ଚାରଣର ନିକଟତମ ରୂପ |
|---|---|---|---|---|
| ୧ | i: | seat | si:t | ସୀଟ |
| ୨ | i | sit | sit | ସିଟ୍ |
| ୩ | e | net | net | ନେଟ୍ |
| *୪ | æ | fat | fæt | ଫାଟ୍ |
| *୫ | a: | laugh | la:f | ଲାଆଫ୍ |
| ୬ | ɔ | pot | ˈphɔt | ଫଟ୍ |
| *୭ | ɔ: | caught | ˌkhɔ:t | ଖଅଟ୍ |
| ୮ | u | good | gud | ଗୁଡ୍ |
| ୯ | u: | food | fu:d | ଫୂଡ୍ |

| ନମ୍ବର | ଧ୍ୱନି | ଇଂରେଜି ଶବ୍ଦ | ଠିକ୍ ଉଚ୍ଚାରଣ | ଓଡ଼ିଆ ଅକ୍ଷରରେ ଉଚ୍ଚାରଣର ନିକଟତମ ରୂପ |
|---|---|---|---|---|
| ୧୦ | ʌ | hut | hʌt | ହାଟ୍ |
| *୧୧ | ə: | bird | bə:d | ବଅଡ୍ |
| *୧୨ | ə | admit | ədmit | ଅଡ୍‌ମିଟ୍ |
| *୧୩ | ei | pay | phei | ଫେଇ |
| *୧୪ | ou | go | gou | ଗୋଉ |
| ୧୫ | ai | high | hai | ହାଏ |
| ୧୬ | au | how | hau | ହାଉ |
| ୧୭ | ɔi | boy | bɔi | ବଏ |
| ୧୮ | iə | here | hiə | ହିଆ |
| ୧୯ | eə | care | kheə | ଖେଆ |
| ୨୦ | ɔə | door | dɔə | ଡ଼ଆ |
| ୨୧ | uə | tour | thuə | ଠୁଆ |

**ଟିପ୍ପଣୀ**—ଓଡ଼ିଆ ଅକ୍ଷରରେ ଉଚ୍ଚାରଣର ନିକଟତମ ରୂପ ହେଉଁ ଛଳେ ଯାହା ଲେଖା ଯାଇଛି, ସହୃଦୟ ପାଠକମାନେ ତାକୁ ଆକ୍ଷରିକ ଭାବରେ ଗ୍ରହଣ କରିବେ ନାହିଁ । ତାରକିତ ୪, ୫, ୭, ୧୧, ୧୨, ୧୩ ତଥା ୧୪ ନମ୍ବର ଧ୍ୱନିକୁ ଓଡ଼ିଆରେ ସୂଚିତ କରିବା ପାଇଁ ସୁବିଧା ନାହିଁ । ଖାଲି କାମ ଚଳାଇବା ଭଳି ଲେଖା ଯାଉଛି । ଏ ବିଷୟରେ ଅଧିକ ଅଧ୍ୟୟନ ପାଇଁ ଇଂରେଜି ଫୋନେଟିକ୍ସ ବହି ଦେଖିବେ ।

ଉପରୋକ୍ତ ୨୧ଟି ସ୍ୱରମାନଙ୍କ ମଧ୍ୟରୁ କେତେକ ଆମେ ପ୍ରାୟ ଠିକ୍ ଉଚ୍ଚାରଣ କରିଥାଉ । ବାକି କେତେକ ସଂପୂର୍ଣ୍ଣ ଭୁଲ ଭାବରେ ଉଚ୍ଚାରଣ କରୁ । ସେଉଁଗୁଡ଼ିକ ଆମେ ଭୁଲ ଉଚ୍ଚାରଣ କରୁ, ସେହିମାନଙ୍କ ସମ୍ପର୍କରେ କେତେକ କଥା କୁହାଯାଇଛି, ବାକିମାନଙ୍କ ବିଷୟରେ ଆବଶ୍ୟକ ସ୍ଥଳେ ସାମାନ୍ୟ ଟିପ୍ପଣୀ ସହିତ କେବଳ ଅଳ୍ପ କେତେକ ଉଦାହରଣ ଦିଆଯାଇଛି ।

## ଇଂରେଜି ସ୍ୱର ନଂ ୧ (i:)

ଏହା ଏକ ଦୀର୍ଘସ୍ୱର । ଓଡ଼ିଆ ଲୋକେ ହ୍ରସ୍ୱସ୍ୱର ଉଚ୍ଚାରଣରେ ଅଭ୍ୟସ୍ତ ହୋଇ ଥିବାରୁ ଏହି ଧ୍ୱନିକୁ ଦୀର୍ଘ ଉଚ୍ଚାରଣ ନ କରି ହ୍ରସ୍ୱ ଉଚ୍ଚାରଣ କରିଥାନ୍ତି । ନିମ୍ନଲିଖିତ ଶବ-

ମାନଙ୍କରେ ଥିବା **i:** ଧ୍ୱନିକୁ ଦୀର୍ଘ ଉଚ୍ଚାରଣ କରିବା ଉଚିତ । ଆମେମାନେ ଏହି ଦୀର୍ଘତାର ତଫାତ୍ ନ ରଖୁଥିବାରୁ ଓଡ଼ିଆ ଉଚ୍ଚାରଣରେ ନିମ୍ନଲିଖିତ ଦୁଇ ଦୁଇଟି ଶବ୍ଦ ଏକପରି ଶୁଣାଯାଏ । ଇଂରେଜମାନଙ୍କ ପକ୍ଷରେ ଏହା ବୁଝିବାପାଇଁ ଅସୁବିଧା ହୁଏ । ଏଠାରେ ଦିଆ ଯାଇଥିବା ଯୋଡ଼ି ମଧ୍ୟରୁ ପ୍ରଥମଟିରେ ଦୀର୍ଘ ସ୍ୱର ( i: ) ଓ ଦ୍ୱିତୀୟଟିରେ ହ୍ରସ୍ୱ ସ୍ୱର ( i ) ର ଉଦାହରଣ ଦିଆଯାଇଛି ।

ଯଥା—

| | |
|---|---|
| heat | hi:t |
| hit | hit |
| leave | li:v |
| live | liv |
| beat | bi:t |
| bit | bit |
| sleep | sli:p |
| slip | slip |
| lead | li:d |
| lid | lid |
| feast | fi:st |
| fist | fist |

ଅଭ୍ୟାସ—

| | |
|---|---|
| free | fri; |
| sea | si: |
| see | si: |
| she | ʃi: ଶୀ (ହିନ୍ଦୀ ତାଲବ୍ୟ ଶ ପରି ଏହାର ଉଚ୍ଚାରଣ) |
| even | i:vn |

| | | |
|---|---|---|
| key | khi: | |
| machine | mə'ʃi:n | |
| people | 'phi:pl | ଫୀପଲ୍ |
| wreath | ri: e | |
| geese | gi:s | |
| queen | khwi:n | |
| zeal | zi:l | |

**ଟିପ୍ପଣୀ**—ଅଭ୍ୟାସରେ ଦିଆଯାଇଥିବା ପ୍ରତ୍ୟେକ ଇଂରେଜ ଶବ୍ଦର ଓଡ଼ିଆ ଅକ୍ଷରରେ ଲିଖିତ ରୂପ ଦିଆଯାଇ ନାହିଁ । ଆମ ଉଚ୍ଚାରଣଠାରୁ ଯେଉଁ ଶବ୍ଦଗୁଡ଼ିକ ବିଶେଷ ଭିନ୍ନ, ସେମାନଙ୍କ ମଧ୍ୟରେ କେତେକର ରୂପ କେଉଁଠି କେମିତି ଆବଶ୍ୟକ ମନେକରି ଦିଆଯାଇଛି । ପ୍ରତ୍ୟେକ ଧ୍ୱନି ବିଚାର କଲାବେଳେ ଅଭ୍ୟାସ ପାଇଁ କେତେକ ଶବ୍ଦ ଦିଆଯାଇଛି । ପାଠକମାନେ ଏହି ଶବ୍ଦ ଗୁଡ଼ିକୁ ଆୟତ୍ତ କରିବାକୁ ଚେଷ୍ଟା କରିବା ଉଚିତ ।

## ଇଂରେଜି ସ୍ୱର ନଂ ୨ ( i )

ଆମମାନଙ୍କ ପାଇଁ ଏହି ଧ୍ୱନିର ଉଚ୍ଚାରଣ ସହଜ । ଏହାର ଉଚ୍ଚାରଣ ଦୀର୍ଘ (i:) ପରି ନ ହୋଇ ବରଂ ହ୍ରସ୍ୱ (e)ପରି ହେବା କଥା । କିନ୍ତୁ e (ଏ) ପାଇଁ ମୁହଁ ଯେତେ ଖୋଲାହେବା କଥା, i ପାଇଁ ସେତେ ନୁହେଁ । ଇଂରେଜ ଲୋକଙ୍କ ମୁହଁରୁ sit, bit ଶବ୍ଦକୁ ଖୁବ ସାବଧାନତାର ସହିତ ଶୁଣିଲେ ତାହା ଯଥାକ୍ରମେ set, bet, ପରି ଶୁଣାଯାଏ । ମୋଟ ଉପରେ ଏହି ଧ୍ୱନିକୁ ଉଚ୍ଚାରଣ କରିବା ପାଇଁ ଓଡ଼ିଆ ହ୍ରସ୍ୱ ଇକୁ ବ୍ୟବହାର ନ କରି ହ୍ରସ୍ୱ 'ଏ' ବ୍ୟବହାର କରିବା ବରଂ ଭଲ ।

ଅଭ୍ୟାସ—

| | |
|---|---|
| sit | sit |
| fit | fit |
| bit | bit |
| goodness | 'gudnis |

| | | |
|---|---|---|
| private | ´privit | |
| busy | ´bizi | |
| lettuce | ´letis | ଲେଟିସ୍ |
| kitten | ´khitn | ଖିଟ୍ନ୍ |

## ଇଂରେଜି ସ୍ୱର ନ–୩ [ e ]

ଏହାର ଉଚ୍ଚାରଣ ଆମମାନଙ୍କ ପାଇଁ ଆଦୌ କଷ୍ଟସାଧ୍ୟ ନୁହେଁ । ଆମେ ସାଧାରଣତଃ ଏହାକୁ ଠିକ୍ ଉଚ୍ଚାରଣ କରିଥାଉ । ଫୋନେଟିକ୍ସ ଲେଖାରେ 'th'ର ଉଚ୍ଚାରଣ 'ଥ' ନ ହୋଇ 'ଠ' ହୁଏ ।

ଅଭ୍ୟାସ—

| | | |
|---|---|---|
| text | ´hekst | ଟେକ୍ସ୍ଟ୍ |
| seven | ´sevn | |
| else | els | |
| leopard | ´lepɔd | |
| feather | feðə | |
| pail mall | ´phel´mel | |
| head | hed | |
| Thames | themz | ଟେମଜ୍ |
| neck | nek | |
| deaf | def | |
| leopard | ´lepɔd | |
| feather | feðə | |

## ଇଂରେଜି ସ୍ୱର–ନ–୪ [ æ ]

ଏହି ଧ୍ୱନିକୁ କେବଳ ଓଡ଼ିଆ କାହିଁକି ଭାରତୀୟ କାହିଁକି ପୃଥିବୀର ଅନେକ ଦେଶ ଲୋକେ ଭିନ୍ନ ଭିନ୍ନ ଢଙ୍ଗରେ ଉଚ୍ଚାରଣ କରିଥାନ୍ତି । କିନ୍ତୁ ପୃଥିବୀର ବହୁ

ଭାଷାଭାଷୀ ଏହାକୁ ଏ ସଦୃଶ ଏକ ଧ୍ୱନି ପରି ଉଚ୍ଚାରଣ କରିଥାନ୍ତି । ବନ୍ଧୁ ହିନ୍ଦୀ ଭାଷାଭାଷୀ ଏହାକୁ 'ଏ' ପରି ଉଚ୍ଚାରଣ କରିଥାନ୍ତି । ତେଣୁ ସେମାନଙ୍କ ଉଚ୍ଚାରଣରେ land ଏବଂ lendର ତଫାତ୍ ଶୁଣାଯାଏ ନାହିଁ । ଓଡ଼ିଶାର ଉତ୍ତର ଓ ପଶ୍ଚିମ ଅଞ୍ଚଳରେ ଏହିପରି ଉଚ୍ଚାରଣ ଶୁଣାଯାଏ । କେବଳ କହିଲା ବେଳେ ଯେ ସେଠି ଲୋକେ ଏପରି ଉଚ୍ଚାରଣ କରନ୍ତି ତା ନୁହେଁ, ଲେଖିଲା ବେଳେ ମଧ୍ୟ ସେହିପରି ଲେଖନ୍ତି । ଏବେ ଏକ ଦୈନିକ କାଗଜରୁ ସମ୍ବଲପୁରରୁ ପ୍ରାପ୍ତ ସମ୍ବାଦରୁ 'ଲେଣ୍ଡ ଏକ୍ୟୁଜିସନ ଅଫିସର' ବାକ୍ୟାଂଶଟି ଦେଖିଥିଲି । ହିନ୍ଦୀ ଭାଷୀ ଷ୍ଟେନୋଙ୍କୁ ଡିକ୍ଟେସନ ଦେଲାବେଳେ ଦେଖା ଯାଇଛି Paris ଶବ୍ଦକୁ ସେ Peris ବୋଲି ଲେଖନ୍ତି । କଟକ ଆଡ଼ର ଲୋକେ 'ଏ' ଜାଗାରେ ଏକ ପ୍ରକାର 'ଯ୍ୟା' ଧ୍ୱନି ଉଚ୍ଚାରଣ କରିଥାନ୍ତି । ଓଡ଼ିଆ ପିଲାଙ୍କୁ ଇଂରେଜି ଶିକ୍ଷା ଦେବା ପାଇଁ ଲିଖିତ କେତେକ ବହିରେ ଇଂରେଜି ଉଚ୍ଚାରଣ ଓଡ଼ିଆରେ ଲେଖା ହୋଇଥାଏ । ସେଥିରେ 'cat' ଏବଂ 'hat'କୁ 'କ୍ୟାଟ୍' ଏବଂ 'ହ୍ୟାଟ୍' ଭାବରେ ଲେଖା ଯାଇଥାଏ । ଜଣେ ସମ୍ବଲପୁରବନ୍ଧୁ ଥରେ କହୁଥିଲେ ଯେ, ପୂର୍ବେ ସମ୍ବଲପୁରୀ ସ୍କୁଲ ପିଲାଏ କଟକ ଆଡ଼ର ଇଂରେଜି ଶିକ୍ଷକଙ୍କୁ 'କ୍ୟାଟ୍' 'ହ୍ୟାଟ୍' ନାମରେ ଚିହ୍ନିତ କରୁଥିଲେ । æ ଧ୍ୱନିର ଉଚ୍ଚାରଣ ପାଇଁ 'ଏ' ଏବଂ 'ଯ୍ୟା' ଉଭୟ ଭୁଲ । ଏହା ଏକ ପ୍ରକାର ଆ ଧ୍ୱନି । ଏହାକୁ ଉଚ୍ଚାରଣ କଲାବେଳେ ଓଡ଼ିଆ 'ଆ' ଅପେକ୍ଷା ଏଥିରେ ପାଟି ଅଧିକ ମେଲା ହୁଏ । ଇଂରେଜି ଧ୍ୱନିବିତ୍ କହନ୍ତି ଏହି ଧ୍ୱନିର ଠିକ୍ ଉଚ୍ଚାରଣ ପାଇଁ ମେଣ୍ଢା ବୋବାଇଲା ପରି 'ବା' 'ବା' କରି ଶିଖିଲେ ଭଲ ଫଳ ହୁଏ । ବଙ୍ଗଳା ଭାଷାରେ 'ଏକଟି' 'ଏକଜନ' ଇତ୍ୟାଦି ଶବ୍ଦ ଉଚ୍ଚାରଣ କଲାବେଳେ 'ଏ'ର ଧ୍ୱନି ଏହି ଧ୍ୱନିପରି ଶୁଣା ଯାଇଥାଏ । ଏହି ଧ୍ୱନି ଉଚ୍ଚାରଣ ବେଳେ ମୁହଁର ଚିତ୍ର ତଳେ ଦିଆଯାଇଥିବା ଚିତ୍ରପରି ଦେଖାଯାଏ । ଇଂରେଜି æ ଧ୍ୱନିକୁ କେହି 'ଏ' ରୂପେ ଉଚ୍ଚାରଣ କରି ଓ କେହି ଆ ପରି ଉଚ୍ଚାରଣ କରି ଭୁଲ କରନ୍ତି । ଏପରି ସ୍ଥଳେ 'ଏ' ରୂପେ ଭୁଲ ନ କରି ବରଂ 'ଆ' ରୂପେ ଭୁଲ କରିବା ଭଲ ।



ନଂ ୧୪ æ ଉଚ୍ଚାରଣରେ ମୁଖର ଅବସ୍ଥା

ମୁଁ ଦେଖିଛି ଏହି ଧ୍ୱନି ଉଚ୍ଚାରଣ ବେଳେ ତଳ ଯୋଡ଼କୁ ସାମାନ୍ୟ ବାମକୁ ମୋଡ଼ି ଗଳାଦେଶକୁ ଟିକିଏ ଟାଣିଦେଲେ ଭଲ ଫଳ ହୁଏ ।

| | | |
|---|---|---|
| ଅଭ୍ୟାସ—cat | khæt... | ଖାଟ୍ |
| mat | mæt | |
| plaid | plæd | |
| lamb | læm... | ଲ୍ୟାମ୍ |
| tax | thæks | ଠାକ୍ସ |
| man | mæn | |
| bad | bæd | |
| gas | gæs | |
| tap | thæp | ଠାପ୍ |

ଇଂରେଜୀ ସ୍ୱର ନ-୪ ( a: )

ଖାଲି ଓଡ଼ିଆ ମାନେ ନୁହନ୍ତି ଅଧିକାଂଶ ଭାରତୀୟ ଏହି ଧ୍ୱନିକୁ ଭୁଲ ଉଚ୍ଚାରଣ କରିଥାନ୍ତି । କିନ୍ତୁ ହିନ୍ଦୀଭାଷୀମାନଙ୍କ ଅପେକ୍ଷା ଏହି ଉଚ୍ଚାରଣରେ ଓଡ଼ିଆମାନଙ୍କର ଭୁଲ ଅଧିକ ସ୍ପଷ୍ଟ । କାରଣ ଓଡ଼ିଆମାନେ ଏହି ଦୀର୍ଘ ଧ୍ୱନିକୁ ହ୍ରସ୍ୱ ଭାବରେ ଉଚ୍ଚାରଣ କରିଥାନ୍ତି । ଏହା ଏକ ପ୍ରକାର ଦୀର୍ଘ ଆ ଧ୍ୱନି । କିନ୍ତୁ ଓଡ଼ିଆ ଆ ଜିଭର ଯେତେ ଆଗରୁ ଉଚ୍ଚାରିତ ହୁଏ ଏହା ସେତେ ଆଗରୁ ହୁଏ ନାହିଁ । ଏହି ଧ୍ୱନି ଉଚ୍ଚାରଣ କଲାବେଳେ ଗଳା ପ୍ରଦେଶରେ ଏକ ପ୍ରକାର ଆଘାତ ଲାଗିଲା ପରି ମନେହୁଏ । ପାଟି ବେଶି ଖୋଲା ରହିଥାଏ । ଏହା ଏକ ଦୀର୍ଘ ଧ୍ୱନି, ଏହାକୁ କେବେହେଲେ ଓଡ଼ିଆ ଆ ପରି ହ୍ରସ୍ୱ ଉଚ୍ଚାରଣ କରିବା ଉଚିତ ନୁହେଁ । ଆପଣ ଦେଖିବେ ଏଥିରୁ ଗୋଟିଏ ହେଲେ ଶବ୍ଦ ଆମେ ଠିକ୍ କରି ଉଚ୍ଚାରଣ କରୁନାହୁଁ । ତେଣୁ ପ୍ରତ୍ୟେକ *a:* କୁ ଦୀର୍ଘ କରି ଉଚ୍ଚାରଣ କରିବା ଉଚିତ ।

| | |
|---|---|
| ଅଭ୍ୟାସ—are | *a:* |
| far | f*a:* |
| part | ph*a:*t |

| | |
|---|---|
| garden | 'ga:dn |
| Hert ford | 'ha:fəd |
| vase | va:z |
| reservoire | 'rezəvwa: |
| laugh | la:f |
| sergeant | 'sa:dʒənt dʒ ଏକପ୍ରକାର ଜ ଧ୍ୱନି |
| ask | a:sk |
| pass | pha:s |
| past | pha:st |

ଇଂରେଜ ବନାନରେ ଅଧିକାଂଶ ସ୍ଥଳରେ r ଲେଖାଥିଲେ ମଧ୍ୟ ତାହା ଆଦୌ ଉଚ୍ଚାରିତ ହୁଏ ନାହିଁ । କେଉଁ କେଉଁ ସ୍ଥଳରେ r ଉଚ୍ଚାରିତ ହୁଏ ଏବଂ କେଉଁଠି ହୁଏ ନାହିଁ ତାହା ବ୍ୟଞ୍ଜନ ପରିଚ୍ଛେଦର r ଅନୁଚ୍ଛେଦରେ ଦ୍ରଷ୍ଟବ୍ୟ ।

## ଇଂରେଜି ସ୍ୱର ନଂ ୬ [ ɔ ]

ଏହି ଧ୍ୱନି ଉଚ୍ଚାରଣ ଆମମାନଙ୍କ ପାଇଁ ଅତି ସହଜ । ବଙ୍ଗଭାଷୀମାନେ ଅ କହିଲା ବେଳେ ଯେମିତି ଓଠକୁ ଗୋଲକରି ଅ ଟକୁ ଲମ୍ବାଇ ଦିଅନ୍ତି, ସେହିପରି କରିଦେଲେ ଏହି ଧ୍ୱନି ଉଚ୍ଚାରିତ ହୋଇଥାଏ । ତେଣୁ ଏହି ଧ୍ୱନି ଉଚ୍ଚାରଣ ପାଇଁ ଓଠକୁ ଗୋଲକରି ଅ କହନ୍ତୁ ।

| | |
|---|---|
| foreign | 'fɔrin |
| want | wɔnt |
| quality | 'khwɔliti |
| gloucestor | 'glsɔtə ଗ୍ଲଷ୍ଟା |
| yacht | jɔt ୟଟ୍ ( j ର ଉଚ୍ଚାରଣ 'ୟ') |
| not | nɔt |
| got | gɔt |

## ଇଂରେଜି ସ୍ୱର ନଂ ୭ [ ɔ: ]

ଏହି ଧ୍ୱନିର ଉଚ୍ଚାରଣ ଆମ୍ଭମାନଙ୍କ ପାଇଁ କଷ୍ଟକର । ପ୍ରଥମତଃ ଏହା ଏକ ଦୀର୍ଘସ୍ୱର । ଆମ୍ଭେମାନେ ଏହି ଧ୍ୱନିଥିବା ଶବ୍ଦକୁ କେବେହେଲେ ଦୀର୍ଘ ଉଚ୍ଚାରଣ କରୁ ନାହିଁ । ଜିହ୍ୱାର ପଛ

ଭାଗ ଅର୍ଥାତ୍ (ଜିହ୍ୱା ପଶ୍ଚାତ)ରୁ ଏହି ଧ୍ୱନି ଉଚ୍ଚାରିତ ହୁଏ ଏବଂ ଏଥିପାଇଁ ଓଠ ବିଶେଷ ଭାବରେ ଗୋଲାକୃତ ହୋଇଥାଏ । ନିମ୍ନରେ ଦିଆ ଯାଇଥିବା ଇଂରେଜୀ ଶବ୍ଦମାନଙ୍କୁ ଆମେ ସାଧାରଣତଃ ଯେମିତି ଉଚ୍ଚାରଣ କରୁ ସେହିପରି ଉଚ୍ଚାରଣ କରି ଇଂରେଜୀ ରେକର୍ଡ ସହିତ ମିଳାଇ ଦେଖିଲେ ସ୍ପଷ୍ଟ ଜଣାପିବ ଯେ ଆମ୍ଭମାନଙ୍କର ଉଚ୍ଚାରଣ ସମ୍ପୂର୍ଣ୍ଣ ଭିନ୍ନ । cot [khɔt] ଏବଂ caught [khɔ:t] ଶବ୍ଦକୁ ଆମେମାନେ ଏକାପରି ଉଚ୍ଚାରଣ କରୁ । କିନ୍ତୁ ଦ୍ୱିତୀୟ ଶବ୍ଦକୁ ଉଚ୍ଚାରଣ କଲାବେଳେ ଓଠକୁ ଗୋଲ କରି ରଖିବା ନିହାତି ଦରକାର । ɔ ଏବଂ ɔ: ପାଇଁ ଓଠ ଗୋଲାକୃତିରେ କି ତାରତମ୍ୟ ଅଛି ତାହା ନିମ୍ନ ଚିତ୍ରରୁ ଦେଖି ପାରିବେ ।





ନଂ ୪   ɔ ଓ ɔ: ଉଚ୍ଚାରଣରେ ଓଠର ଗୋଲାକୃତିର ପରିମାଣ

ଅଭ୍ୟାସ—

| | |
|---|---|
| more | mɔ: |
| roar | rɔ: |
| board | bɔ:d |
| course | khɔ:s |
| thought | θɔ:t |
| wrath | rɔ:θ |
| cough | khɔ:f |
| paw<br>pour<br>pore | phɔ: |
| caught | khɔ:t |
| bought | bɔ:t |
| source<br>sauce | sɔ:s |

| | |
|---|---|
| vaughan | vɔ:n |
| your | jɔ: |

ɔ ଓ ɔ: ର ତଫାତ ଏହି ଶବ୍ଦ ମାନଙ୍କରେ ଦେଖନ୍ତୁ ।—

| | |
|---|---|
| fox | fɔks |
| forks | fɔ:ks |
| pond | pɔnd |
| pawned | pɔ:nd |
| spot | spɔt |
| sport | spɔ:t |

## ଇଂରେଜି ସ୍ୱର ନଂ ୮ [u]

ଏହି ଧ୍ୱନି ଆମ୍ଭମାନଙ୍କ ପାଇଁ ଉଚ୍ଚାରଣ କରିବା ସହଜ । ଏହା ହ୍ରସ୍ୱ 'ଉ' ଭଳି ଶୁଣାଯାଏ । ଏହି ଉଚ୍ଚାରଣରେ ଓଠ ଶିଥିଳ ଅବସ୍ଥାରେ ଥାଏ । ଓଡ଼ିଆ ହ୍ରସ୍ୱ ଉ କୁ ଏ ସ୍ଥଳରେ ବ୍ୟବହାର କଲେ ଚଳି ଯାଇପାରେ ।

| | |
|---|---|
| ଅଭ୍ୟାସ—good | gud |
| book | buk |
| women | wumən |
| worsted | wustid |
| worcestor | wustə |

## ଇଂରେଜି ସ୍ୱର ନଂ ୯ [u:]

ଏହା ଏକ ଦୀର୍ଘ ଉକାର ଧ୍ୱନି । ଆମେମାନେ ଏହାକୁ ହ୍ରସ୍ୱ ଭାବରେ ଉଚ୍ଚାରଣ କରିଥାଉ । ଏଥିପାଇଁ ଆମ ଉଚ୍ଚାରଣରେ full [ ful ] ଏବଂ fool [ fu: l ] ଭିତରେ କୌଣସି ତଫାତ୍ ଜଣା ପଡ଼େ ନାହିଁ । ଏହି ଧ୍ୱନି ଥିବା ଶବ୍ଦକୁ ଦୀର୍ଘ ଉଚ୍ଚାରଣ କରିବା ନିତାନ୍ତ ଦରକାର । ଏହି ଧ୍ୱନି ଉଚ୍ଚାରଣ ସମୟରେ ଦୁଇଟିଯାକ ଓଠ ଖୁବ୍ ନିକଟବର୍ତ୍ତୀ ତଥା ଗୋଲକୃତ ହୋଇ ଆଗକୁ ବାହାରି ପଡ଼ନ୍ତି ।

ଅଭ୍ୟାସ—

| | |
|---|---|
| rule | ru:l |
| june | dʒu:n |
| tomb | thu:m ... ଟୁମ୍ |
| ado | ə'du: |
| lose | lu:z |
| loose | lu:s |
| Brougham | bru:m, |
| music | mju:zik |
| tube | thju:b ... ଟ୍ୟୁବ୍ |
| new | nju: ... ନ୍ୟୁ |
| view | vju: |
| few | fju: |
| food | fu:d ... ଫୁଡ୍ |

## ଇଂରେଜି ସ୍ୱର ନଂ ୧୦ [ ʌ ]

ଏହା ଏକ ହ୍ରସ୍ୱ ଧ୍ୱନି । କେତେକାଂଶରେ ଏହା ଓଡ଼ିଆ ଆ ପରି ଶୁଣାଯାଏ । ଓଡ଼ିଆ ଆ କୁ ଅପେକ୍ଷାକୃତ ହ୍ରସ୍ୱ କରିଦେଲେ ଏହି ଧ୍ୱନିପରି ଶୁଣାଯିବ । ଏହି ଉଚ୍ଚାରଣରେ ଓଡ଼ିଆ ଆ ଅପେକ୍ଷା ଓଠ ବେଶି ବିସ୍ତୃତ ହୋଇଥାଏ ଏବଂ ପାଟି ବେଶ ମେଲ ରହିଥାଏ । ଦୁଇ ଓଠକୁ ପାଖାପାଖି ରଖି ଏହି ଧ୍ୱନି ଉଚ୍ଚାରଣ କରାଯାଇ ପାରେ ନାହିଁ । କଟକ-ଢେଙ୍କାନାଳ ଅଞ୍ଚଳରେ ଲୋକେ ଯାହାକୁ 'ବସ୍' (bus) କହନ୍ତି, ମୟୂରଭଞ୍ଜ ଅଞ୍ଚଳର ଲୋକେ ତାକୁ 'ବାସ୍' କହନ୍ତି । ଏହି 'ବାସ୍' ହିଁ ଠିକ୍ । ଆମେ ଯେଉଁ 'ବସ୍' କହୁଁ ତାହା ଇଂରେଜି boss ଶବ୍ଦର ଉଚ୍ଚାରଣର ପାଖାପାଖି, bus ଶବ୍ଦର ନୁହେଁ ।



ନଂ ୫ ʌ ଉଚ୍ଚାରଣରେ ମୁଖର ଅବସ୍ଥା

ଅଭ୍ୟାସ—

| | | |
|---|---|---|
| cut | khʌt | |
| mutton | 'mʌtn | |
| comfort | 'khʌmfət | |
| company | 'khʌmpəni | |
| compass | 'khʌmpəs | |
| conjure | 'khʌndʒə | |
| constable | khʌnstəbl | |
| done | dʌn | |
| london | 'lʌndən | |
| monday | 'mʌndi | |
| onion | 'ʌnjən | |
| somerset | 'sʌməsit | |
| stomach | 'stʌmək | |
| dove | dʌv | |
| oven | 'ʌvn | |
| borough | 'bʌrə | |
| thorough | 'θʌrə | |
| twopence | 'thʌpəns | ଠାପ୍‌ନ୍ସ |
| cousin | khʌzn | |

## ଇଂରେଜି ସ୍ୱର ନଂ ୧୧ [əː]

ଏହି ଧ୍ୱନିର ଉଚ୍ଚାରଣ ଅନ୍ୟାନ୍ୟ ସ୍ୱରଧ୍ୱନି ଅପେକ୍ଷା ଅଧିକ କଷ୍ଟ ସାଧ୍ୟ । ଓଡ଼ିଆ ଭାଷାଭାଷୀମାନେ ଏହାକୁ ସର୍ବଦା ଆ ରୂପେ ଉଚ୍ଚାରଣ କରିଥାନ୍ତି । କେତେକଙ୍କ ଉଚ୍ଚାରଣରେ bad ଏବଂ bird ଭିତରେ କୌଣସି ତଫାତ୍ ନ ଥାଏ । ଏହି ଧ୍ୱନି ଉଚ୍ଚାରଣ ପାଇଁ ଓଠ ଦୁଇଟି ବିସ୍ତୃତ ରହନ୍ତି ଏବଂ ଦୁଇଫାଳ ଯାକ ପାଟି ଖୁବ୍ ନିକଟବର୍ତ୍ତୀ ରହନ୍ତି । ପାଟିକୁ ବିଶେଷ ମେଲାକରି ʌ ଧ୍ୱନି ଉଚ୍ଚାରଣ କରାଯାଇପାରେ କିନ୍ତୁ əː ଧ୍ୱନି ଉଚ୍ଚାରଣ କରିବା ସମ୍ଭବ ନୁହେଁ । ଏହି əː ଧ୍ୱନିକୁ କେନ୍ଦ୍ରୀୟ ଧ୍ୱନି କୁହାଯାଏ, କାରଣ ଏହା ଜିହ୍ୱାର କେନ୍ଦ୍ର ( ଜିହ୍ୱା ମଧ୍ୟ ) ପ୍ରଦେଶରେ ସୃଷ୍ଟ ହୋଇଥାଏ । ଏହି ଧ୍ୱନିକୁ ଶିଖିବା ପାଇଁ ଉଭୟପାଖ ଦାନ୍ତକୁ ନିକଟବର୍ତ୍ତୀ କରି ଓ ଦୁଇ

ଓଠକୁ ଉଭୟ ପାର୍ଶ୍ୱକୁ ବିସ୍ତୃତ କରି ଅ ଉଚ୍ଚାରଣ କଲେ ଏହା ଉତ୍ପନ୍ନ ହେବ । ଅନେକ ଲୋକ ଏହାକୁ ʌ କିମ୍ବା æ ପରି ଉଚ୍ଚାରଣ କରିଥାନ୍ତି ମାତ୍ର ତାହା ସଂପୂର୍ଣ୍ଣ ଭୁଲ । ଏହି ଧ୍ୱନି ଉଚ୍ଚାରଣ ପାଇଁ ମୁହଁର ଚିତ୍ର ଦେଖନ୍ତୁ ।



ନଂ ୬ ə:ଉଚ୍ଚାରଣରେ ମୁଖର ଅବସ୍ଥା

ଅଭ୍ୟାସ—

| | |
|---|---|
| bird | bə:d |
| girl | gə:l |
| world | wə:ld |
| courtesy | 'khə:tisi |
| Earth | ə:θ |
| journal | 'dʒə:nl |
| connoisseur | kɔni'sə: |
| were | wə: |
| colonel | 'khə:nl |
| verse | və:s |
| sir | sə: |
| first | fə:st |

**ଟିପ୍ପଣୀ**—ପ୍ରଦତ୍ତ ବହୁ ଶବ୍ଦରେ ବନାନରେ r ଥିବାରୁ ଅନେକେ ସେହି rକୁ ଉଚ୍ଚାରଣ କରିଥାନ୍ତି । ଏପରିକି ତାମିଲଭାଷୀମାନେ card ଶବ୍ଦରେ ଥିବା r କୁ ଉଚ୍ଚାରଣ କରି କାର୍‌ଡ୍‌ କହିଥାନ୍ତି । କିନ୍ତୁ ଉପରୋକ୍ତ ଶବ୍ଦ ମାନଙ୍କରେ ଥିବା r ଆଦୌ ଉଚ୍ଚାରିତ ହୁଏ ନାହିଁ । ଆମେରିକାନ ମାନେ ଏହି ଧ୍ୱନି ଉଚ୍ଚାରଣ କରିବା ପାଇଁ ଜିଭ ଅଗକୁ ଲେଉଟାଇ ଦେଇ ଏକ ପ୍ରକାର ସ୍ୱତନ୍ତ୍ର ଧ୍ୱନି ଉଚ୍ଚାରଣ କରିଥାନ୍ତି । କିନ୍ତୁ ଇଂରେଜୀ ଉଚ୍ଚାରଣରେ ଜିଭ ଅଗ ତଳଧାଡ଼ି ଦାନ୍ତ ମୂଳରେ ରହିବା କଥା । ଆମେରିକାନମାନଙ୍କ ପରି ଜିଭ

ଅଗକୁ ଉପରକୁ ଓଲଟାଇ ଅ ଧ୍ୱନି କରି ଦେଖନ୍ତୁ କେମିତି ଶୁଭୁଛି । ଇଂରେଜୀ ɑ: ଧ୍ୱନିଠାରୁ ଏହା ବହୁତ ଭିନ୍ନ । ଏହାକୁ ମୂର୍ଦ୍ଧନ୍ୟ ə କହନ୍ତି । ଉପରକୁ ଉଠା ଜିଭର ଏକ ଚିତ୍ର ଦେଖନ୍ତୁ ।



ନଂ ୭ ମୂର୍ଦ୍ଧନ୍ୟ ଧ୍ୱନିରେ ଜିଭର ସ୍ଥିତି

## ଇଂରେଜୀ ସର ନଂ ୧୨ [ ə ]

ଇଂରେଜୀ ଭାଷାରେ ଯଦି କେଉଁ ସ୍ୱର ସବୁଠୁ ଅଧିକ ବ୍ୟବହୃତ ହେଉଥାଏ, ତେବେ ତା' ହେଉଛି ə । ଏହାକୁ neutral vowel କହନ୍ତି । କେହି କେହି 'ଶ୍ୱା' ବୋଲି କହନ୍ତି । ଏହା ମଧ୍ୟ ଏକ କେନ୍ଦ୍ରୀୟ ସ୍ୱର । କୌଣସି କଥା କହିଲା ବେଳେ, ହଠାତ୍ ମନେ ନ ପଡ଼ିଲେ ସେହି କଥା ପୁଣି ମନେ ପଡ଼ିବା ପର୍ଯ୍ୟନ୍ତ ଆମେ ଅ-ଅ-ଅ-ଅ ହୋଇ କିଛି ସମୟ ରହିଯାଉ । ଅଟକି ହୋଇ କହିଲା ବେଳେ ଯେଉଁ କ୍ଷୀଣ ଅ ଧ୍ୱନି ଶୁଣାଯାଏ, ତାକୁ ଇ ଧ୍ୱନି ବିଜ୍ଞାନରେ ə ଦ୍ୱାରା ସୂଚିତ କରା ଯାଇଥାଏ । ଏହା ଏକ ଅତି ସହଜ ଧ୍ୱନି । ଏହାପାଇଁ ଆମମାନଙ୍କୁ କୌଣସି ସାଧନା କରିବାକୁ ପଡ଼େ ନାହିଁ ।

ଅଭ୍ୟାସ—

| | |
|---|---|
| break fast | 'brekfəst |
| forward | 'fɔ:wəd |
| Standard | 'stændəd |
| manners | 'mænəz |
| horrible | 'hɔrəbl |

| | |
|---|---|
| Jackob | 'dʒeːkəb |
| Cupboard | 'kh ʌ bəd |

**ଟିପ୍ପଣୀ**—ଏହି ଧ୍ୱନିକୁ ଉଚ୍ଚାରଣ କରିବା ଆଦୌ କଷ୍ଟକର ନୁହେଁ, କିନ୍ତୁ କେଉଁ ସ୍ଥାନରେ ଏହାକୁ ବ୍ୟବହାର କରାଯିବ, ସେହିକି ଜାଣିବା କଷ୍ଟ । ଏ ବିଷୟରେ ସାଧାରଣ ନିୟମ ହେଉଛି ଯେ ଶବ୍ଦରେ ଷ୍ଟ୍ରେସ୍ ନ ଥିବା ଜାଗାରେ ଏହି ଧ୍ୱନି ରହିପାରେ ।

| | | |
|---|---|---|
| 'ɔːgəst | ... | (ବିଶେଷ୍ୟ) |
| ɔː'g ʌ st | ... | (ବିଶେଷଣ) |
| dʒə'pæn | | |
| 'dʒæpə'niːz | | |

ଉପରୋକ୍ତ ଉଦାହରଣମାନଙ୍କରୁ ଦେଖି ପାରିବେ ଯେଉଁଠି ଜାଗାରେ ə ଅଛି ସେଠି ଷ୍ଟ୍ରେସ୍‌ର ଚିହ୍ନ ( ' ) ନାହିଁ । ( ଷ୍ଟ୍ରେସ୍ ବିଷୟରେ ବିଶେଷ ବିବରଣୀ ପାଇଁ ୪ର୍ଥ ପରିଚ୍ଛେଦ ଦେଖନ୍ତୁ । )

— × —

# ସଂଯୁକ୍ତସ୍ୱର

ଏପର୍ଯ୍ୟନ୍ତ ୧ନମ୍ବର i: ଠାରୁ ୧୨ ନମ୍ବର ɘ ପର୍ଯ୍ୟନ୍ତ ଯେଉଁ ସ୍ୱରମାନଙ୍କ କଥା କୁହାଗଲା, ସେଗୁଡ଼ିକ ସବୁ ଶୁଦ୍ଧ ସ୍ୱର। ସେହି ଧ୍ୱନିମାନଙ୍କ ଉଚ୍ଚାରଣ ଆରମ୍ଭରୁ ଶେଷ ମଧ୍ୟରେ ବାଗ୍‌ଯନ୍ତ୍ରରେ କୌଣସି ପରିବର୍ତ୍ତନ ହୁଏ ନାହିଁ। ମାତ୍ର ୧୩ ନମ୍ବର ei ଠାରୁ ୨୧ ନମ୍ବର uɘ ପର୍ଯ୍ୟନ୍ତ ନଅଟି ଯାକ ଧ୍ୱନି ସଂଯୁକ୍ତ ସ୍ୱର। ଏ ପ୍ରକାର ଧ୍ୱନି ଉଚ୍ଚାରଣର ଆରମ୍ଭରୁ ଶେଷ ଭିତରେ ବାଗ୍‌ଯନ୍ତ୍ରରେ ପରିବର୍ତ୍ତନ ହୁଏ। ଇଂରେଜି ଶୁଦ୍ଧ ସ୍ୱରମାନଙ୍କ ମଧ୍ୟରୁ ୩ ୟ ନମ୍ବର e (ଏ) ଧ୍ୱନିକୁ ଉଚ୍ଚାରଣ କରି ତା ସହିତ ୧୩ ନମ୍ବର ei (ଏଇ) କୁ ଉଚ୍ଚାରଣ କରି ଦର୍ପଣରେ ଦେଖନ୍ତୁ ୩ ନମ୍ବର ପାଇଁ ବାଗ୍‌ଯନ୍ତ୍ର ସ୍ଥିର ଥିଲାବେଳେ ୧୩ ନମ୍ବର ପାଇଁ ଓଠ ଏବଂ ତଳପାଟି କିପରି ଗତିଶୀଳ ହେଉଛନ୍ତି। ଶୁଦ୍ଧ ସ୍ୱରରେ ବାଗ୍‌ଯନ୍ତ୍ରର ସ୍ଥିରତା ଓ ସଂଯୁକ୍ତ ସ୍ୱରରେ ବାଗ୍‌ଯନ୍ତ୍ରର ଗତିଶୀଳତା ଉଭୟ ପ୍ରକାର ସ୍ୱର ମଧ୍ୟରେ ପ୍ରକୃତ ପାର୍ଥକ୍ୟ। ସଂଯୁକ୍ତ ସ୍ୱରକୁ ଦୁଇଟି ଅକ୍ଷର ଦ୍ୱାରା ଲେଖାଗଲେ ମଧ୍ୟ ତାହା ପ୍ରକୃତରେ ଗୋଟିଏ ଧ୍ୱନି, ଦୁଇଟି ନୁହେଁ। ଏହା ନିଶ୍ୱାସର ଏକ ଆଘାତରେ ଏକ ଧ୍ୱନି ପରି ଉଚ୍ଚାରିତ ହୁଏ।

## ଇଂରେଜି ସ୍ୱର ନଂ ୧୩ [ ei ]

ଏହି ଧ୍ୱନିର ଉଚ୍ଚାରଣ ଅତି ସହଜ। ଅଥଚ ନ ଜାଣିଥିବାରୁ ଆମେମାନେ ଏହାକୁ ଏକ ସାଧାରଣ 'ଏ' ଭାବରେ ଉଚ୍ଚାରଣ କରିଥାଉଁ। ପ୍ରକୃତରେ ଏହାକୁ 'ଏଇ' ଭାବରେ ଉଚ୍ଚାରଣ କରିବା କଥା।

ଅଭ୍ୟାସ—

| | | |
|---|---|---|
| cake | kheik | ଖେଇକ୍ |
| make | meik | ମେଇକ୍ |
| take | theik | ଠେଇକ୍ |
| late | leit | |
| Yale | jeil | ୟେଇଲ୍ |

| | | | |
|---|---|---|---|
| pen | phen | pain | phein |
| ken | khen | cane | khein |
| edge | edʒ | age | eidʒ |
| men | men | main }<br>mane } | mein |

୩ ନମ୍ବର ଓ ୧୩ ନମ୍ବର ମଧ୍ୟରେ ପ୍ରଭେଦ ଦେଖନ୍ତୁ

## ଇଂରେଜି ସ୍ୱର ନଂ ୧୪ [ ou ]

ଭାରତରେ କୌଣସି ରାଜ୍ୟର ଲୋକେ ଏହି ଧ୍ୱନିକୁ ଠିକ୍ ଉଚ୍ଚାରଣ କରନ୍ତି ନାହିଁ । ସେଥିପାଇଁ ଏହି ଧ୍ୱନି ଥିବା go, home ଭଳି ଛୋଟ ଛୋଟ ଶବ୍ଦକୁ ମଧ୍ୟ ଆମେ ଭୁଲ ଉଚ୍ଚାରଣ କରୁ । ଏହି ଧ୍ୱନି ଉଚ୍ଚାରଣ ସମୟରେ ପ୍ରଥମେ 'ଓ' ପାଇଁ ପ୍ରସ୍ତୁତ ହୋଇ ଆସ୍ତେ 'ଉ' ଉଚ୍ଚାରଣ କରାଯାଏ । ଦର୍ପଣରେ ଦେଖିଲେ ସ୍ପଷ୍ଟ ଜଣାଯିବ ଓ ଠାରୁ ଉ ପର୍ଯ୍ୟନ୍ତ ଗଲାବେଳେ ମୁଖରନ୍ଧ୍ର କିପରି କ୍ରମଶଃ ଛୋଟ ହୋଇ ଯାଏ । ଅତି ଛୋଟ ଛୋଟ ଇଂରେଜି ଶବ୍ଦରେ ଏହି ଧ୍ୱନିକୁ ଭୁଲ ଉଚ୍ଚାରଣ କରି ଆମେ ବିଦେଶୀ ବୋଲି ଜଣାପଡୁ । ଯେତେ ସଂଯୁକ୍ତସ୍ୱର ଅଛି, ସେମାନଙ୍କ ଭିତରେ ଏହି ouର ଉଚ୍ଚାରଣ ସବୁଠୁ କଷ୍ଟସାଧ୍ୟ ମନେ ହୁଏ । o ଠାରୁ u ପର୍ଯ୍ୟନ୍ତ ଓଠର ଗତି ଚିତ୍ରରେ ଦେଖନ୍ତୁ ।

ନଂ ୮—ou ଉଚ୍ଚାରଣରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଓଠର ଗତି



o ଧ୍ୱନିରେ ଆରମ୍ଭ



u ଧ୍ୱନିରେ ଶେଷ

ଅଭ୍ୟାସ—

| | |
|---|---|
| no | nou |
| go | gou |

| | |
|---|---|
| so<br>sew<br>sow | sou |
| home | houm |
| only | 'ounli |
| post | phoust |
| road | roud |
| toast | thoust |
| bureau | bjuə'rou |
| old | ould |
| hope | houp |
| loaf | louf |
| boat | bout |
| joseph | 'dʒouzif |

## ଇଂରେଜି ସ୍ୱର ନଂ ୧୫ [ ai ]

ଆମ୍ଭେମାନେ ଏହି ଧ୍ୱନିକୁ ଯେଉଁଭଳି ଭାବରେ ଉଚ୍ଚାରଣ କରୁ ତାହା ପ୍ରାୟ ଠିକ୍ କହିଲେ ଚଳେ । ଅଧିକାଂଶ ଲୋକ ଏହି ai 'ଆଏ'କୁ 'ଆଇ' ଭାବରେ ଉଚ୍ଚାରଣ କରନ୍ତି । କିନ୍ତୁ ଏହି ତଫାତ୍‌ଟା ଧରି ପାରିବା ଏତେ ସହଜ ନୁହେଁ ।

ଅଭ୍ୟାସ—

| | |
|---|---|
| right<br>rite<br>write<br>wright | rait |
| five | faiv |
| while | wail |
| guide | gaid |

## ଇଂରେଜି ସ୍ୱର ନଂ ୧୬ [au]

ଏହି ଧ୍ୱନି ଉଚ୍ଚାରଣ ପାଇଁ ଆମମାନଙ୍କର କୌଣସି ଅସୁବିଧା ହୁଏ ନାହିଁ ।

| | |
|---|---|
| ଅଭ୍ୟାସ—how | hau |
| cow | khau |
| house | haus |
| loud | laud |
| Mac Leod | mə 'khlaud |
| vow | vau |

## ଇଂରେଜି ସ୍ୱର ନଂ ୧୭ [ɔi]

ଏହି ଧ୍ୱନି ଉଚ୍ଚାରଣ ଆମ ମାନଙ୍କ ପାଇଁ ସହଜ । ଆମେ ଏହାକୁ ପ୍ରାୟ ଠିକ୍ ଉଚ୍ଚାରଣ କରିଥାଉ । ɔ ପରେ i ଦେଖି 'ଅଇ' ବୋଲି ଉଚ୍ଚାରଣ କରିବା ଉଚିତ ନୁହେଁ । ଏହାର ଉଚ୍ଚାରଣ 'ଅଏ' ।

ଅଭ୍ୟାସ—

| | |
|---|---|
| boy | bɔi |
| oil | ɔil |
| noise | nɔiz |
| Doyle | dɔil |
| voice | vɔis |
| soil | sɔil |

## ଇଂରେଜି ସ୍ୱର ନଂ–୧୮ [ iə ]

ଏହି ଧ୍ୱନି ଉଚ୍ଚାରଣ ଆଦୌ କଷ୍ଟସାଧ୍ୟ ନୁହେଁ । କିନ୍ତୁ ଏହି ଧ୍ୱନି ଥିବା ଅନେକ ଶବ୍ଦ ଆମେମାନେ ଭୁଲ ଉଚ୍ଚାରଣ କରୁ । ବିଶେଷତଃ ଶେଷରେ r ଥିବା ଶବ୍ଦ ଗୁଡ଼ିକୁ r ସହିତ ଉଚ୍ଚାରଣ କରି ଆମେ ବିଦେଶୀ ବୋଲି ଜଣା ପଡ଼ୁ ।

ଅଭ୍ୟାସ—

| | | |
|---|---|---|
| deer<br>dear | } | dɪə |
| here<br>hear | } | hiə |
| ear | | iə |
| beard | | biəd |
| idea | | ai'diə |
| Ian | | iən |

## ଇଂରେଜି ସ୍ୱର ନଂ ୧୯ [eə]

ଏହି ଧ୍ୱନିର ଉଚ୍ଚାରଣ ଆମ ପକ୍ଷରେ ସହଜ ; ଅଧିକାଂଶ ଏହାକୁ ପ୍ରାୟ ଠିକ୍ ଉଚ୍ଚାରଣ କରିଥାନ୍ତି ।

ଅଭ୍ୟାସ—

| | |
|---|---|
| pair | pheə |
| fair | feə |
| hair | heə |
| care | kheə |
| vary | veəri |
| wear | weə |

**ଟିପ୍ପଣୀ**—ପୂର୍ବ ଉଦାହରଣମାନଙ୍କ ପରି ଏଥିରେ ମଧ୍ୟ r ଉଚ୍ଚାରଣ କରାଯାଏ ନାହିଁ ।

## ଇଂରେଜି ସ୍ୱର ନଂ [ɔə]

ଏହି ଧ୍ୱନି ଉଚ୍ଚାରଣ କରିବା କଷ୍ଟକର । ଓଡ଼ିଆ ଭାଷାଭାଷୀ ଏହି ଧ୍ୱନିକୁ ଆଦୌ ଉଚ୍ଚାରଣ କରନ୍ତି ନାହିଁ । ବରଂ ଏହି ଧ୍ୱନି ସ୍ଥାନରେ ଏକ ପ୍ରକାର o (ଓ) ଧ୍ୱନି

ଉଚ୍ଚାରଣ କରିଥାନ୍ତି । ବଙ୍ଗଳା ଭାଷାଭାଷୀ ଓଠକୁ ଗୋଲାକୃତ କରି ଯେପରି ଅ ଉଚ୍ଚାରଣ କରନ୍ତି ସେହିପରି ଏକ ଅ ରେ ଆରମ୍ଭ କରି ଉଚ୍ଚୁଆ ଅ ରେ ଶେଷ କଲେ ଧ୍ୱନିଟି ɔə ର ଧ୍ୱନି ପରି ଶୁଣାଯିବ ।

ଅଭ୍ୟାସ—

| | |
|---|---|
| Course<br>Coarse | khɔɔs |
| Score | skɔə |
| floor | flɔə |
| pour<br>pore | pɔə |

**ଟିପ୍ପଣୀ**—କେବେଳ କେବେଳ ଏହି ɔə ଧ୍ୱନି କେବଳ ଏକ ଦୀର୍ଘ ɔː ଧ୍ୱନିରେ ପରିଣତ ହୋଇଥାଏ । ଉଦାହରଣ—

| | |
|---|---|
| floor | flɔː |
| door | dɔː |
| more | mɔː |
| your | jɔː |

ଇଂଲଣ୍ଡରେ ଏବେ ɔə ସ୍ଥାନରେ ɔː ଉଚ୍ଚାରଣ ବେଶି ଶୁଣାଯାଏ । ଇଂରେଜ ଧ୍ୱନିବିତ୍ ଡାନିଏଲ୍ ଜୋନ୍ସ କହନ୍ତି ଯେ ɔə ସ୍ଥାନରେ ୭ନମ୍ବର ɔː ଧ୍ୱନିକୁ ବ୍ୟବହାର କରିବା ବରଂ ଭଲ ।

## ଇଂରେଜି ସ୍ୱର ନଂ ୨୧ [uə]

ଏହି ଧ୍ୱନିର ଉଚ୍ଚାରଣ ଆଦୌ କଠିନ ନୁହେ । କେତେକ ସ୍ଥଳରେ ଆମେମାନେ ଏହାର ଠିକ୍ ଉଚ୍ଚାରଣ କରିଥାଉ ଏବଂ ଅନ୍ୟ କେତେକ ସ୍ଥାନରେ ଭୁଲ ଉଚ୍ଚାରଣ କରିଥାଉ । poor ଶବ୍ଦରେ ଏହାର ଠିକ୍ ଉଚ୍ଚାରଣ କରିଥାଉ କିନ୍ତୁ tour ଶବ୍ଦରେ ଏକ ଦୀର୍ଘ ଉଚ୍ଚାରଣ କରି ଭୁଲ କରିଥାଉ ।

| | |
|---|---|
| ଅଭ୍ୟାସ—poor | phuə |
| tour | thuə |
| tourist | thuərist |
| moor | muə |
| doer | duə |
| sure | ʃuə |
| fluency | fluənsi |
| Jewel | dʒuəl |

## ଦ୍ୱିସଂଯୁକ୍ତ ସ୍ୱର

ସ୍ୱରମାନଙ୍କ କଥା କହି ସାରିବା ପୂର୍ବରୁ ଏଠାରେ ଦ୍ୱିସଂଯୁକ୍ତ ସ୍ୱରକଥା ଟିକିଏ ଉଲ୍ଲେଖ କରିଦେବା ଉଚିତ । ଇଂରେଜୀରେ ଯେମିତି ai, au ପ୍ରଭୃତି ସଂଯୁକ୍ତସ୍ୱର ଅଛନ୍ତି ସେମିତି aiə, auə ପ୍ରଭୃତି ଦ୍ୱିସଂଯୁକ୍ତ ସ୍ୱର ମଧ୍ୟ ଅଛନ୍ତି । ଅନେକ ସମୟରେ ଏହି ଦ୍ୱିସଂଯୁକ୍ତ ସ୍ୱରଗୁଡ଼ିକ ଉଚ୍ଚାରଣର ସୁବିଧା ପାଇଁ କେବଳ ଗୋଟିଏ ଗୋଟିଏ ଶୁଦ୍ଧ ସ୍ୱରରେ ପରିଣତ ହୋଇଯାନ୍ତି । ଉଦାହରଣ ସ୍ୱରୂପ aiə ଏବଂ auə କେବଳ ଦୀର୍ଘ a: ରେ ପରିଣତ ହୋଇଯାନ୍ତି ।

fire............ ......ʃaiə > ʃa:

flowerpot ···flauəpɔt > fla:pɔt

କିନ୍ତୁ ଆମ ପରି ବିଦେଶୀମାନଙ୍କ ପାଇଁ ସଂକ୍ଷିପ୍ତ ଏହି a: ରୂପ ଶିକ୍ଷାକରିବାର କୌଣସି ଆବଶ୍ୟକତା ନାହିଁ । ଆମେ ତାଙ୍କ ଦ୍ୱିସଂଯୁକ୍ତ ରୂପ aiə, auə ପ୍ରଭୃତି ଶିଖିବା ଦରକାର । ନିମ୍ନରେ କେତେକ ଦ୍ୱିସଂଯୁକ୍ତ ସ୍ୱର ସମ୍ବଳିତ ଶବ୍ଦ ଦିଆଗଲା ।

| | |
|---|---|
| Byron | 'baiərən |
| Scientific | saiən'tifik |
| desirable | di'zaiərəbl |
| iron | aiən |
| towel | thauəl |
| vowel | vauəl |
| Coward | khauəd |
| powerful | 'phauəfl |
| violent | 'vaiələnt |
| liable | 'laiəbi |
| diary | 'daiəri |

**ଟିପ୍ପଣୀ**—ସଂଯୁକ୍ତ ସ୍ୱର ଦୁଇଟି ଅକ୍ଷର ଦ୍ୱାରା ସୂଚିତ ହେଉଥିଲେ ମଧ୍ୟ ତାହା ଦୁଇ ଧ୍ୱନିର ସମବାୟ ନ ହୋଇ ପ୍ରକୃତରେ ଗୋଟିଏ ଧ୍ୱନି । ସେହିପରି ଦ୍ୱିସଂଯୁକ୍ତ ସ୍ୱର ତିନୋଟି ଅକ୍ଷର ଦ୍ୱାରା ସୂଚିତ ହେଉଥିଲେ ମଧ୍ୟ ତାହା ପ୍ରକୃତରେ ତିନୋଟି ଧ୍ୱନିର ସମବାୟ ନ ହୋଇ ଗୋଟିଏ ଧ୍ୱନି ଅଟେ ।

---

# ତୃତୀୟ ପରିଚ୍ଛେଦ

## ଇଂରେଜି ବ୍ୟଞ୍ଜନ

ଯେ କୌଣସି ଭାଷାରେ ସ୍ୱରଶିକ୍ଷା ବିଶେଷ କଷ୍ଟସାଧ୍ୟ, ବ୍ୟଞ୍ଜନ ଶିକ୍ଷା ଅପେକ୍ଷାକୃତ ସହଜ । ଇଂରେଜି ଭାଷାରେ ସ୍ୱର ଯେତିକି ବ୍ୟଞ୍ଜନ ପ୍ରାୟ ସେତିକି, ବରଂ କମ କହିଲେ ଚଳେ । ଏହି ବ୍ୟଞ୍ଜନ ଗୁଡ଼ିକ ଛ ଭାଗରେ ବିଭକ୍ତ ଯଥା—ସ୍ପର୍ଶ, ସଂଘର୍ଷୀ, ସ୍ପର୍ଶ ସଂଘର୍ଷୀ, ନାସିକା, ପାର୍ଶ୍ୱିକ ଓ ଅର୍ଦ୍ଧସ୍ୱର । ଏମାନଙ୍କ ମଧ୍ୟରେ ସ୍ପର୍ଶ ଓ ସଂଘର୍ଷୀମାନଙ୍କର ସଂଖ୍ୟା ଅଧିକ । ଇଂରେଜି ବ୍ୟଞ୍ଜନମାନଙ୍କ ବିଷୟରେ କିଛି କହିବା ପୂର୍ବରୁ ବ୍ୟଞ୍ଜନର ସଂଖ୍ୟାଧିକ ଏହି ଦୁଇ ବିଭାଗ ବିଷୟରେ ସାମାନ୍ୟ ପରିଚୟ ଦେବା ଆବଶ୍ୟକ । ଯେଉଁ ଧ୍ୱନି ଉଚ୍ଚାରଣରେ ବାଗ୍‌ଯନ୍ତ୍ରରେ କୌଣସି ନା କୌଣସି ସ୍ଥାନରେ କିଛିକାଳ ପାଇଁ ପବନ ଅଟକି ଯାଇ ପୁଣି ହଠାତ୍ ବହିର୍ଗତ ହୁଏ ସେହି ଧ୍ୱନିକି **ସ୍ପର୍ଶ** କୁହାଯାଏ । କିନ୍ତୁ ଯେଉଁ ଧ୍ୱନି ଉଚ୍ଚାରଣରେ ମୁଖରନ୍ଧ୍ରରେ କୌଣସି ନା କୌଣସି ସ୍ଥାନରେ ବାୟୁ ସଂପୂର୍ଣ୍ଣରୂପେ ଅଟକି ନ ଯାଇ ଏକ କ୍ଷୁଦ୍ର ମାର୍ଗ ମଧ୍ୟରେ ଅବାଧିତ ଗତିରେ ଗୁଲିଥାଏ ତାହାକୁ **ସଂଘର୍ଷୀ** କୁହାଯାଏ । ସଂଘର୍ଷୀ କହିବାର କାରଣ ହେଉଛି ଏହି ଧ୍ୱନି ଉଚ୍ଚାରଣରେ ବାୟୁମାର୍ଗ ଏତେ କ୍ଷୁଦ୍ର ହୋଇ ଯାଇଥାଏ ଏବଂ ବାୟୁ ସେହି କ୍ଷୁଦ୍ର ମାର୍ଗରେ ଏପରି ଘଷି ହୋଇ ଆସେ ଯେ ଛିଦ୍ରରୁ ଏକ ପ୍ରକାର ଘର୍ଷଣ ଧ୍ୱନି (friction) ଶୁଣାଯାଏ । ନିଆଁ ଲଗାଇଲା ବେଳେ ଆମେ ଯେଉଁ ଫୁ ଫୁ ଫୁ ଶବ୍ଦକରୁ

କମ୍ବା କୌଣସି ଲୋକକୁ ଇଶାରା ଦେବାପାଇଁ କମ୍ବା ଚୁପ୍ କରାଇବା ପାଇଁ ଆମେ ଯେଉଁ ସ୍ ମ୍ ସ୍ ଧ୍ୱନି କରୁ ତାହା ସଂଘର୍ଷୀ ଧ୍ୱନିର ଅନ୍ତର୍ଗତ ।

ଇଂରେଜି ଭାଷାରେ ସ୍ପର୍ଶ ଧ୍ୱନି ସଂଖ୍ୟା ଯେତିକି ସଂଘର୍ଷୀ ସଂଖ୍ୟା ପ୍ରାୟ ସେତିକି କମ୍ବା ଟିକିଏ ବେଶି । ଇଂରେଜି ସ୍ପର୍ଶ ଧ୍ୱନି ଉଚ୍ଚାରଣ ଆମପାଇଁ କଷ୍ଟସାଧ୍ୟ ନୁହେ । ଅବଶ୍ୟ ଆମେ ଯେମିତି ଉଚ୍ଚାରଣ କରୁ, ସେଥିରେ ଅନେକ ତଫାତ୍ ରହିଯାଏ । ତଥାପି ଆମ ସ୍ପର୍ଶ ଧ୍ୱନି ଉଚ୍ଚାରଣ ଇଂରେଜମାନେ ବୁଝି ନଅନ୍ତି । କିନ୍ତୁ ସଂଘର୍ଷୀ ଧ୍ୱନି ଉଚ୍ଚାରଣ କରିବା ଆମ ପକ୍ଷରେ ଭାରି କଷ୍ଟକର କାରଣ ଓଡ଼ିଆ ଭାଷାରେ ସଂଘର୍ଷୀ ଧ୍ୱନି ଭାରି କମ ଥିବାରୁ ସେ ପ୍ରକାର ଧ୍ୱନି ଉଚ୍ଚାରଣରେ ଆମେ ଅଭ୍ୟସ୍ତ ନୁହଁ । ସେଥିପାଇଁ ଇଂରେଜି ବ୍ୟଞ୍ଜନ ଶିକ୍ଷା କଲାବେଳେ ସଂଘର୍ଷୀ ବ୍ୟଞ୍ଜନମାନଙ୍କ ବିଷୟରେ ଖୁବ୍ ସାବଧାନ ହେବା ଦରକାର । ଯେଉଁ ବ୍ୟଞ୍ଜନ ଧ୍ୱନି ଗୁଡ଼ିକ ଆମେ ନିତାନ୍ତ ଅସ୍ୱାଭାବିକ ଭାବରେ ଉଚ୍ଚାରଣ କରୁ, କେବଳ ସେହି ଧ୍ୱନିମାନଙ୍କର ବିଚାର ଏଠି କରାଯିବ । ଅନ୍ୟାନ୍ୟ ସହଜ ବ୍ୟଞ୍ଜନମାନଙ୍କ ବିଷୟରେ କୌତୂହଳ ହେଲେ ପାଠକ ଯେ କୌଣସି ଇଂରେଜି ଫୋନେଟିକସ୍ ପୁସ୍ତକ ଦେଖି ପାରନ୍ତି । କିନ୍ତୁ କେହି ଯେମିତି ଭୁଲରେ ନ ବୁଝନ୍ତି ଯେ ଓଡ଼ିଆ ଏବଂ ଇଂରେଜିର ସମକକ୍ଷ ବ୍ୟଞ୍ଜନ ଗୁଡ଼ିକ ସର୍ବୋତଭାବେ ସମାନ । କଥାଟାକୁ ଉଦାହରଣ ଦ୍ୱାରା ବୁଝାଇ ହିଏ । ଇଂରେଜିରେ 'd' ଅଛି ଏବଂ ଓଡ଼ିଆରେ ମଧ୍ୟ ତାର ସମକକ୍ଷ 'ଡ' ଧ୍ୱନି ଅଛି, କିନ୍ତୁ କେହି ଭାବିବା ଉଚିତ ନୁହେ ଯେ ଓଡ଼ିଆ 'ଡ' ଓ ଇଂରେଜି 'd' ସର୍ବୋତଭାବେ ସମାନ । ସେ ବିଷୟରେ ଯେଉଁ ଗଭୀର ପ୍ରଶ୍ନ ଅଛି ତା ଏଠି ଆଲୋଚ୍ୟ ନୁହେ । କିନ୍ତୁ ଏତିକି କୁହାଯାଇ ପାରେ ଯେ ଥରେ ଜଣେ ବିଲାତି ସାହେବ 'day' କହିଲା ବେଳେ ଜଣେ ଭଦ୍ରଲୋକ ତାକୁ 'tie' ବୋଲି ବୁଝିଲେ । ଇଂରେଜି 'd' ଓଡ଼ିଆ 'ଡ' ପରି ଶୁଣା ନ ଯାଇ ଓଡ଼ିଆ 'ଟ' ପରି ଶୁଣାଯିବାର ବୈଜ୍ଞାନିକ କାରଣ ଅଛି । ତଥାପି ଅଧିକାଂଶ କ୍ଷେତ୍ରରେ ଆମେ ଯେଉଁ ଇଂରେଜି 'd' ଉଚ୍ଚାରଣ କରୁ ତାହା ସହଜରେ ବୁଝି ହୋଇଯାଏ ବୋଲି ସେ ବିଷୟରେ ଏଠି ବିଶେଷ ଆଲୋଚନା କରାଯାଉ ନାହିଁ । କେବଳ ଏତିକି ମନେରଖିବା ଉଚିତ ଯେ ଉଭୟ ଭାଷାର 'ଡ' ଧ୍ୱନିକୁ ଆମେ ସମାନ ବୋଲି ଭାବୁଥିଲେ ମଧ୍ୟ ସେଥିରେ ବହୁତ ତଫାତ୍ ରହିଛି । ଅନେକ ସମୟରେ ଏହି ତଫାତ୍ ଯୋଗୁ 'day'କୁ 'tie' ବୋଲି ବୁଝିବାର ଦୁର୍ଯୋଗ ମଧ୍ୟ ଘଟେ ।

## ଇଂରେଜି ବ୍ୟଞ୍ଜନମାନଙ୍କର ବିଭାଗ ଓ ବିଚାର

(କ) ସ୍ପର୍ଶ—p, t, k, b, d, g

(ଖ) ଅନୁନାସିକ—m, n, ŋ

(ଗ) ପାର୍ଶ୍ୱିକ—l

(ଘ) ସଂଘର୍ଷୀ—fv, θð, sz, ʃʒ, r, h

(ଙ) ଅର୍ଦ୍ଧସ୍ୱର—w, j

(ଚ) ସ୍ପର୍ଶ ସଂଘର୍ଷୀ—tʃ, dʒ

**ଟିପ୍ପଣୀ**—ଏହି ପରିଚ୍ଛେଦରେ (ଘ) ବିଭାଗ ଅନ୍ତର୍ଗତ ଧ୍ୱନିମାନଙ୍କ ବିଷୟରେ ବିଶେଷ ଭାବରେ ବିଚାର କରାଯିବ । କାରଣ କେବଳ s ଓ h କୁ ଛାଡ଼ିଦେଲେ ଏହି ବିଭାଗର ଅନ୍ୟାନ୍ୟ ଧ୍ୱନିମାନଙ୍କର ସମକକ୍ଷ ସାର୍ଥକ ସଂଘର୍ଷୀ ଧ୍ୱନି ଓଡ଼ିଆ ଭାଷାରେ ମିଳେ ନାହିଁ । ସେଥିପାଇଁ ସେଗୁଡ଼ିକ ବିଶେଷ ପ୍ରଣିଧାନର ଯୋଗ୍ୟ । (ଖ) ବିଭାଗ ଅନ୍ତର୍ଗତ ଧ୍ୱନିମାନଙ୍କର କୌଣସି ବୈଶିଷ୍ଟ୍ୟ ନ ଥିବାରୁ ସେମାନଙ୍କ ବିଷୟରେ ବିଶେଷ କିଛି କୁହାଯିବ ନାହିଁ ।

(କ) p, t, k, b, d, g ଧ୍ୱନିମାନଙ୍କ ମଧ୍ୟରୁ t, d ର ଉଚ୍ଚାରଣ ଆମମାନଙ୍କ ପାଇଁ କଠିନ । ଇଂରେଜି t, d ଓ ଓଡ଼ିଆ ଟ, ଡ କୁ ସମାନ ବୋଲି ଭାବିବା ସଂପୂର୍ଣ୍ଣ ଭୁଲ । ଇଂରେଜି t, d ଉଚ୍ଚାରଣରେ ଜିହ୍ୱାଗ୍ର ବର୍ତ୍ସ ସହିତ ମିଳିତ ହେଉଥିବାରୁ ସେମାନଙ୍କୁ ବର୍ତ୍ସ୍ୟ ଧ୍ୱନି କୁହାଯାଏ କିନ୍ତୁ ଓଡ଼ିଆ ଟ, ଡ ଉଚ୍ଚାରଣରେ ଜିହ୍ୱାଗ୍ର ଉପରକୁ ଉଠି ପଛକୁ ମୋଡ଼ି ହୋଇ ମୂର୍ଦ୍ଧା (ତାଳୁ) ସହିତ ମିଳିତ ହୋଇ ରହୁଥିବାରୁ ସେମାନଙ୍କୁ ମୂର୍ଦ୍ଧନ୍ୟ ଧ୍ୱନି କୁହାଯାଏ । ଇଂରେଜିରେ ଯାହା ବର୍ତ୍ସ୍ୟ ଓଡ଼ିଆରେ ତାର ସମକକ୍ଷ ଧ୍ୱନି ମୂର୍ଦ୍ଧନ୍ୟ ।







ନଂ ୯— ବର୍ତ୍ସ୍ୟ ଓ ମୂର୍ଦ୍ଧଣ୍ୟ ଧ୍ୱନିରେ ଜିଭର ସ୍ଥିତି

[ P, T, K, ]

ଉପରୋକ୍ତ ଧ୍ୱନିମାନଙ୍କ ସଂପର୍କରେ ଗୋଟିଏ ପ୍ରଧାନ କଥା ଆମେ ଭୁଲି ଯାଇଥାଉ । ସେଥିପାଇଁ ଇଂରେଜି କହିଲା ବେଳେ ଆମ ଇଂରେଜି ବୁଝିବା ସାହେବମାନଙ୍କ ପକ୍ଷରେ କଠିନ ହୁଏ ଏବଂ ସାହେବମାନେ ଡିକ୍ଟେସନ ଦେଲାବେଳେ ଆମେ ମଧ୍ୟ ତାହା ଠିକ୍ ଧରି ପାରୁ ନାହିଁ । p, t, k ଷ୍ଟ୍ରେସ୍ ପୋଜିସନରେ ଥିଲାବେଳେ ଯଥାକ୍ରମେ ph, th, kh ଭାବରେ ଉଚ୍ଚାରିତ ହୁଅନ୍ତି । କୌଣସି ଧ୍ୱନି ଷ୍ଟ୍ରେସ୍ ପୋଜିସନରେ ରହିବାର ଅର୍ଥ ହେଉଛି ଅଧିକ ଶକ୍ତି ସହିତ ଉଚ୍ଚାରିତ ହେବା । ଫୋନେଟିକସ୍ ବହିରେ ଏହି ଷ୍ଟ୍ରେସ୍ ଦେଖାଇବା ପାଇଁ ଅକ୍ଷର ଉପରେ ( ' ) ଏହିପରି ଏକ କ୍ଷୁଦ୍ର ଚିହ୍ନ ଦିଆଯାଇ ଥାଏ । p, t, k, ଉପରେ ଯେଉଁଠି ( ' ) ଭଳି ଚିହ୍ନ ଦିଆ ଯାଇଥାଏ ଅର୍ଥାତ୍ 'p, 't, 'k ପରି ଲେଖା ହୋଇଥାଏ ସେଠି ଯଥାକ୍ରମେ ph, th, kh, ବୋଲି ଉଚ୍ଚାରଣ କରାଯାଏ । ଅବଶ୍ୟ ଡିକ୍ସନାରୀରେ ଏକ ସିଲେବ୍‌ଲ-ସମ୍ବଳିତ ଶବ୍ଦ ଉପରେ ଏପରି ଚିହ୍ନ ଦିଆଯାଇ ନ ଥାଏ କିନ୍ତୁ ସେପରି କ୍ଷେତ୍ରରେ ଷ୍ଟ୍ରେସ୍ ଅଛି ବୋଲି ବୁଝି ନେବାକୁ ହୁଏ । ଉଦାହରଣ ସ୍ୱରୂପ pit, tin, kin ପ୍ରଭୃତି ଏକ ସିଲେବ୍‌ଲ ଶବ୍ଦ ଗୁଡ଼ିକରେ ଷ୍ଟ୍ରେସ ( ' ) ଚିହ୍ନ ନ ଥିଲେ ମଧ୍ୟ ସେଗୁଡ଼ିକ ହ-କାର ( h ) ସହିତ ଉଚ୍ଚାରିତ ହୁଅନ୍ତି ଯଥା—phin, thin, khin କିନ୍ତୁ ଷ୍ଟ୍ରେସ୍ ପୋଜିସନରେ ନ ଥିଲାବେଳେ ସେଗୁଡ଼ିକ ସାଧାରଣ p, t, k ପରି ଉଚ୍ଚାରିତ ହୁଅନ୍ତି । s ସହିତ ମିଳିତ ହୋଇ ରହିଲା ବେଳେ (sp, st. sk)

p, t, k ସାଧାରଣ ଭାବରେ ଉଚ୍ଚାରିତ ହୁଅନ୍ତି । କେତେକ ବ୍ୟକ୍ତି ଏହି ତଥ୍ୟର ମର୍ମ ବୁଝି ନ ପାରି stକୁ ମଧ୍ୟ sth ଭାବରେ ଉଚ୍ଚାରଣ କରନ୍ତି ଯଥା stopକୁ sthop (ଷ୍ଥପ୍) କହନ୍ତି । କିନ୍ତୁ ଏହା ସମ୍ପୂର୍ଣ୍ଣ ଭୁଲ ।

ଅଭ୍ୟାସ—

| | | | | |
|---|---|---|---|---|
| pill | phil | | kin | khin |
| 'pencil | 'phensl | | kill | khil |
| post | phoust | | kite | khait |
| power | phauə | କିନ୍ତୁ | spin | spin |
| tin | thin | | stick | stik |
| take | theik | | stop | stɔp |
| top | thɔp | | skate | skeit |
| | | | sky | skai |

(ଗ) [l]

(କ) ର b, d, g ଏବଂ (ଖ) ଅନ୍ତର୍ଗତ m, n, ŋର କୌଣସି ବିଶେଷ ଆଲୋଚନାର ଆବଶ୍ୟକତା ନାହିଁ । (ଗ)ର l ବିଚାର ଯୋଗ୍ୟ । ଇଂରେଜୀରେ l (ଲ) ଦୁଇ ପ୍ରକାର ଅଛି । ଗୋଟିଏ ଶୁକ୍ଳ ଲ ଏବଂ ଅନ୍ୟଟି କୃଷ୍ଣ ଲ । କେବଳ ଜିହ୍ୱାର ସ୍ଥିତି ନେଇ ଏଥିରେ ପରିବର୍ତ୍ତନ ହୁଏ ।


ଶୁକ୍ଳ ଲ


କୃଷ୍ଣ ଲ

ନଂ ୧୧—ଦୁଇ ପ୍ରକାର l (ଲ)

ଓଡ଼ିଆ ଭାଷାର ଲ ଟି ଶୁକ୍ଳ ଲ । ଏଥିରେ କୃଷ୍ଣ ଲ ନାହିଁ । କୃଷ୍ଣ ଲ ପାଇଁ ଜିହ୍ୱାର ମଝି ସାମାନ୍ୟ ନଇଁପାଇ ଜିହ୍ୱାର ପଛ ଭାଗ ଉପରକୁ ଉଠିଯାଏ । ତେଣୁ ସେହି ଲ ଟି ଏକ ପ୍ରକାର ଲ୍ଲ ମତ ଶୁଣାଯାଏ । ସେହି ଧ୍ୱନି ସାଧାରଣତଃ ଇଂରେଜି ଶବ୍ଦମାନଙ୍କ ଶେଷରେ କିମ୍ବା ଶେଷ ବ୍ୟଞ୍ଜନର ସାନିଧ୍ୟରେ ଶୁଣାଯାଏ । କିନ୍ତୁ ଇଂରେଜି ଶବ୍ଦର ପ୍ରଥମରେ ଯେଉଁ ଲ ଦେଖାଯାନ୍ତି ସବୁ ଶୁକ୍ଳ ଲ । ଓଡ଼ିଆ ଭାଷିକ ପ୍ରାୟ ସମସ୍ତ ଅଣ-ଇଂରେଜଭାଷୀ କୃଷ୍ଣ ଲ ଉଚ୍ଚାରଣ କରି ନ ପାରି ବିଦେଶୀ ବୋଲି ଜଣା ପଡ଼ନ୍ତି । ରୁଷିଆରେ କିନ୍ତୁ ପରିସ୍ଥିତି ସଂପୂର୍ଣ୍ଣ ଓଲଟା । ରୁଷ୍‌ମାନେ ଆଗପଛ ସବୁ ଲ କୁ କୃଷ୍ଣ ଲ ଅର୍ଥାତ୍ ଏକ ପ୍ରକାର ଲ୍ଲ ଭାବରେ ଉଚ୍ଚାରଣ କରନ୍ତି । ଏହି ଧ୍ୱନି ଉଚ୍ଚାରଣ କରିବାକୁ ହେଲେ ଲ କହିବା ସମୟରେ ଉ କହିବାର ଚେଷ୍ଟା କରିବାକୁ ହେବ । କୃଷ୍ଣ ଲ ପାଇଁ ଧ୍ୱନିବିଜ୍ଞାନରେ ସ୍ୱତନ୍ତ୍ର ଚିହ୍ନ ଅଛି । ମାତ୍ର ଏଠି ତାହା ବ୍ୟବହାର କରାଯାଇ ନାହିଁ ।

| | ଶୁକ୍ଳ ଲ | | କୃଷ୍ଣ ଲ | |
|---|---|---|---|---|
| ଅଭ୍ୟାସ— | leave | li:v | table | 'theibl |
| | look | luk | noble | 'noubl |
| | line | lain | little | 'litl |
| | loaf | louf | possible | 'phɔsəbl |
| | lake | leik | fell | fel |
| | lick | lik | old | ould |
| | | | cold | khould |

(ଘ) [fv, θð, sz ʃʒ, r, h]

ଉପର ଚିହ୍ନିତ ଧ୍ୱନିମାନଙ୍କ ମଧ୍ୟରୁ s ଏବଂ h କୁ ଛାଡ଼ିଦେଲେ ଅନ୍ୟ ସମସ୍ତ ଧ୍ୱନି ଓଡ଼ିଆଭାଷୀମାନଙ୍କ ନିକଟରେ ଅପରିଚିତ ତଥା ଉଚ୍ଚାରଣ ପାଇଁ କଷ୍ଟସାଧ୍ୟ । ଏପରିକି h ର ଯେଉଁ ସଘୋଷ ଅଘୋଷ ଦୁଇ ବିଭାଗ ଅଛି ସେଥିମଧ୍ୟରୁ ଅଘୋଷ h ର ଉଚ୍ଚାରଣ ଆମମାନଙ୍କ ନିକଟରେ ବିଶେଷ ପରିଚିତ ନୁହେଁ । ଘର୍ଷୀ ଧ୍ୱନିମାନଙ୍କର ଯେଉଁ ଯୋଡ଼ି ଉପରେ ଦିଆଯାଇଛି ସେହି ଯୋଡ଼ିର ଦୁଇ ଧ୍ୱନି ମଧ୍ୟରୁ ପ୍ରଥମଟି ଅଘୋଷ ଓ ଦ୍ୱିତୀୟଟି ସଘୋଷ । ଉଦାହରଣ ସ୍ୱରୂପ fv ଦୁହିଁଙ୍କ ମଧ୍ୟରୁ f ଅଘୋଷ ଓ v ସଘୋଷ ଅର୍ଥାତ୍ f ଉଚ୍ଚାରଣରେ ସ୍ୱରଯନ୍ତ୍ରରେ କମ୍ପନ ନ ଥାଏ କିନ୍ତୁ v ଉଚ୍ଚାରଣରେ କମ୍ପନ ଥାଏ । ନିମ୍ନରେ ସଂଘର୍ଷୀ ଧ୍ୱନିମାନଙ୍କର ଆବଶ୍ୟକୀୟ ବିବରଣୀ ପ୍ରଦତ୍ତ ହୋଇଛି ।

[f. v]

ଓଡ଼ିଆ ଭାଷାଭାଷୀ ଏହି ଧ୍ୱନିମାନଙ୍କର ଠିକ୍ ଉଚ୍ଚାରଣ କରନ୍ତି ନାହିଁ । ସେମାନେ f ଓ v ସ୍ଥାନରେ ଯଥାକ୍ରମେ ଓଡ଼ିଆ ଫ ଏବଂ ଭ ବ୍ୟବହାର କରନ୍ତି । କିନ୍ତୁ ଓଡ଼ିଆ ଫ, ଭ ଇଂରେଜି f ଓ v ଠାରୁ ଭିନ୍ନ । ଫ, ଭ ଓଷ୍ଠ୍ୟ ଧ୍ୱନି କିନ୍ତୁ f, v **ଦନ୍ତୋଷ୍ଠ୍ୟ** । ଅର୍ଥାତ୍ ଫ, ଭ ଉଚ୍ଚାରଣ ସମୟରେ ଦୁଇଟିଯାକ ଓଠ ପରସ୍ପର ସହିତ ମିଳିତ ହୁଅନ୍ତି କିନ୍ତୁ f,v ଉଚ୍ଚାରଣରେ ତଳଓଠ ଓ ଉପରଦାନ୍ତ ପରସ୍ପର ସହିତ ମିଳିତ ହୁଅନ୍ତି । ଉପର ଓଠ ସମ୍ପୂର୍ଣ୍ଣ ନିଷ୍କ୍ରିୟ ରହେ । ପ୍ରଥମେ ଏହି ଉଚ୍ଚାରଣ ଶିକ୍ଷା କରିବାକୁ ଗଲାବେଳେ ଅଭ୍ୟାସ ଦୋଷରୁ ଉପରଓଠ ଆସି ତଳଓଠ ସହିତ ଲାଗିଯାଏ । ସେଥିପାଇଁ ପ୍ରଥମେ ପ୍ରଥମେ ପେନ୍‌ସିଲ ମୁନରେ କିମ୍ବା ଆଙ୍ଗୁଠିରେ ଉପର ଓଠକୁ ଟେକି ରଖିବାକୁ ହୁଏ । ତଳ ଓଠର ଉପରଧାର ଓ ଉପର ଦାନ୍ତର ତଳଧାରକୁ ଏକାଠି ରଖି ଫ୍ ଫ୍ ଫ୍ କରି ପବନ ଛାଡ଼ିଲେ ଏହି ଧ୍ୱନି ଉତ୍ପନ୍ନ ହୁଏ ।

'very fine' ଇଂରେଜି ବାକ୍ୟାଂଶକୁ ଉଚ୍ଚାରଣ କଲାବେଳେ v ଏବଂ f ସ୍ଥାନରେ ଆମେମାନେ ଭ ଓ ଫ ଉଚ୍ଚାରଣ କରୁ । ଇଂରେଜ ଲୋକଙ୍କ କାନକୁ ତାହା ନିହାତି ଅସ୍ୱାଭାବିକ ଶୁଣାଯାଏ । ଏପରିକି father ପରି ନିତ୍ୟ ବ୍ୟବହୃତ ଶବ୍ଦ ମଧ୍ୟ ଆମେ ଠିକ୍ ରୂପେ ଉଚ୍ଚାରଣ କରିପାରୁ ନାହିଁ । f ଓ v ର ପ୍ରକୃତ ଉଚ୍ଚାରଣ ପରୀକ୍ଷା କରିବା ପାଇଁ ମୁହଁ ଆଗରେ ଖଣ୍ଡିଏ ଅତି ପତଳା କାଗଜ ଧରିବାକୁ ହେବ । ଯଦି ପବନ ଆଘାତରେ କାଗଜଟି ହଲାଯାଏ ତେବେ ଉଚ୍ଚାରଣ ଠିକ୍ ବୋଲି ଜଣାପଡ଼ିବ । ହିନ୍ଦୀ ଭାଷାରେ ବ୍ୟବହୃତ ଉର୍ଦ୍ଦୁ 'ଫୌରନ୍' 'ଫାୟଦା' ପ୍ରଭୃତି ଶବ୍ଦରେ ଥିବା ଫ ଇଂରେଜି f ପରି ଉଚ୍ଚାରିତ ହୁଏ । ତେଣୁ ହିନ୍ଦୀଭାଷୀଙ୍କ ପାଇଁ ଏହି ଧ୍ୱନି ଆଦୌ କଷ୍ଟସାଧ୍ୟ ନୁହେଁ । f ଅପେକ୍ଷା v ଧ୍ୱନି ଅଧିକ କଷ୍ଟସାଧ୍ୟ । ଓଡ଼ିଆ ଭାଷାଭାଷୀ ଏହାକୁ ଯେପରି ଭାବରେ ଉଚ୍ଚାରଣ କରନ୍ତି, ଇଂରେଜ କାନକୁ ତାହା b ପରି ଶୁଣାଯାଏ । ପ୍ରଥମେ ପ୍ରଥମେ ଲଣ୍ଡନ ସ୍କୁଲରେ ମୁଁ vowel ଶବ୍ଦ ଉଚ୍ଚାରଣ କଲାବେଳେ ମୋର ଅଧ୍ୟାପକଙ୍କୁ ତାହା 'bowel' ପରି ଶୁଣା ଯାଉଥିଲା ବୋଲି ସେ କହୁଥିଲେ । ହିନ୍ଦୀ ଭାଷୀଙ୍କ ପାଇଁ ଏହି ଧ୍ୱନି ଆହୁରି କଠିନ । ସେମାନେ v କୁ ଓ୍ୱ ପରି ଉଚ୍ଚାରଣ କରନ୍ତି ।

| | | | |
|---|---|---|---|
| ଅଭ୍ୟାସ—phone | foun | van | væn |
| phonetics | fo'netiks | vase | va:z |
| photo | 'foutou | vine | vain |

| | | | |
|---|---|---|---|
| phrase | freiz | glove | glʌv |
| physicist | 'fizisist | wives | waivs |
| found | faund | vote | vout |
| fence | fens | prove | pru:v |
| loaf | louf | of | ɔv |

v ର ସଠିକ ଉଚ୍ଚାରଣ କରି ଏହି ବାକ୍ୟଟି ପଢ଼ନ୍ତୁ—A very vivacious and vain villain visited various villages of the valley ଦେଖିବେ କେମିତି ମଜା ହେବ । f ପାଇଁ ଏହିପରି ଆଉ ଗୋଟିଏ ବାକ୍ୟ ଦେଖନ୍ତୁ—If you have fed on frozen vegetables for months, you feel very funny.

[ θ, ð ]

ଏହି ଦୁଇ ଧ୍ୱନିର ଉଚ୍ଚାରଣ ଓଡ଼ିଆ ଭାଷୀ କାହିଁକି ବୋଧହୁଏ କୌଣସି ଭାରତୀୟ ଠିକ୍ ଭାବରେ ଉଚ୍ଚାରଣ କରନ୍ତି ନାହିଁ । θ କୁ ଏକ ପ୍ରକାର 'ଥ' ଏବଂ ð କୁ ଏକପ୍ରକାର 'ଦ' ଦ୍ୱାରା ଲୋକେ ଉଚ୍ଚାରଣ କରି କାମ ଚଳାଇ ଦିଅନ୍ତି । ଏହି ଦୁହିଁଙ୍କର ଉଚ୍ଚାରଣ ବିଶେଷ କଷ୍ଟସାଧ୍ୟ । ଏହି ଉଚ୍ଚାରଣ ପାଇଁ ଜିଭ ଅଗକୁ ଉପର ଦାନ୍ତର ତଳ ଧାରକୁ ଛୁଆଁଇ ରଖାଯାଏ ଏବଂ ଜିଭର ବାକି ଅଂଶଟା ପାଟି ଭିତରେ ପାଶହୋଇ ରହିଥାଏ । ଉପର ଦାନ୍ତ ଓ ଜିଭ ଅଗ ମଧ୍ୟରେ ଥିବା ଅତି ସୂକ୍ଷ୍ମ ଫାଙ୍କରେ ଜୋରରେ ପବନ ଛାଡ଼ିବାକୁ ହୁଏ । ପ୍ରଥମେ ପ୍ରଥମେ ଏହି ଧ୍ୱନି ଶିଖିଲା ବେଳେ ଜିଭ ଅଗକୁ ଦାନ୍ତ ଆଗକୁ ବାହାର କରି ଆଣିଲେ ବରଂ ଭଲ । θ ପାଇଁ ଥ୍ ଥ୍ ଥ୍ କରି ପବନ ଛାଡ଼ିବାକୁ ହୁଏ ଏବଂ ð ପାଇଁ ଦ୍ ଦ୍ ଦ୍ କରି ପବନ ଛାଡ଼ିବାକୁ ହୁଏ । ଓଡ଼ିଆ ଥ ଓ ଦ ଦନ୍ତ୍ୟସ୍ପର୍ଶ ଅଟନ୍ତି । କିନ୍ତୁ ଇଂରେଜୀ ଧ୍ୱନି ଦୁଇଟି **ଅନ୍ତର୍ଦନ୍ତ୍ୟ ସଂଘର୍ଷୀ** ଅଟନ୍ତି । ସ୍ପର୍ଶ ଧ୍ୱନି ଉଚ୍ଚାରଣରେ ପବନ କିଛିକାଳ ଅଟକି ଯାଏ କିନ୍ତୁ ସଂଘର୍ଷୀ ଉଚ୍ଚାରଣରେ ପବନ ଅବିଚ୍ଛିନ୍ନ ଭାବରେ ଚାଲିଥାଏ । ପ୍ରଥମେ ପ୍ରଥମେ ଶିଖିଲା ବେଳେ ଜିଭ ଅଗକୁ ଖଟେଇ ଦେଲାପରି ଟିକିଏ ବାହାରକୁ ଅଣାଯାଏ । ହୁଏତ ଏଥିପାଇଁ ମୁଖ ଟିକିଏ ବିକୃତ ଦେଖାଯାଇ ପାରେ । କିନ୍ତୁ ଧ୍ୱନି ଶିଖିଲା ବେଳେ ମୁଖ ବିକୃତି ପ୍ରତି ଦୃଷ୍ଟି ଦେବା ଉଚିତ ନୁହେଁ । ଧ୍ୱନି ଶିକ୍ଷାର ଏହା ଏକ ମୌଳିକ ମନ୍ତ୍ର ।

ଅଭ୍ୟାସ—

| | | | |
|---|---|---|---|
| Thin | θin | mouths | mauðz |
| mouth | mauθ | Then | ðen |
| smith | smiθ | There | ðeə |
| health | helθ | Those | ðouz |
| bath | ba:θ | baths | ba:ðz |

mouth ଏବଂ bath ଶବ୍ଦର ଏକ ବଚନ ଓ ବହୁ ବଚନର ଉଚ୍ଚାରଣ ପାର୍ଥକ୍ୟ ଲକ୍ଷ୍ୟ କରନ୍ତୁ ଓ ଫୋନେଟିକ୍ସ ଡିକ୍ସନାରୀରୁ ଏହିପରି ପାର୍ଥକ୍ୟ ଅନୁସଂଧାନ କରନ୍ତୁ ।

[ s, z ]

ଇଂରେଜୀ s ଉଚ୍ଚାରଣ ପାଇଁ ଓଡ଼ିଆଭାଷୀଙ୍କର କୌଣସି ସାଧନା ଆବଶ୍ୟକ ନାହିଁ । ଓଡ଼ିଆ ଲୋକେ ସ, ଷ, ଶ ତିନୋଟି ଲେଖିଲେ ମଧ୍ୟ ସେମାନେ କେବଳ ଦନ୍ତ୍ୟ ସ ଉଚ୍ଚାରଣ କରନ୍ତି । ଏହି ସ ଉଚ୍ଚାରଣ କରି ଇଂରେଜୀ s ର କାମ ହାସଲ କରାଯାଇ ପାରେ । କିନ୍ତୁ ଇଂରେଜୀ ଭାଷାରେ ଯେଉଁ z ଅଛି ତାହା ଓଡ଼ିଆ ଭାଷାରେ ନାହିଁ । ଉର୍ଦ୍ଦୁ ଜର ଏବଂ ଜରୁର ଶବ୍ଦରେ ଯେଉଁ ଜ ଉଚ୍ଚାରଣ କରାଯାଏ, ସେହି ଜ ଇଂରେଜୀ z ପରି । ଏହି ଧ୍ୱନି ଉଚ୍ଚାରଣ କରିବାକୁ ହେଲେ ସ କହିବା ପାଇଁ ଜିହ୍ୱାକୁ ପ୍ରସ୍ତୁତ କରି ସ୍ ସ୍ ସ୍ ସ୍ ନ କହି ଜ୍ ଜ୍ ଜ୍ ଜ୍ କହିଲେ z ସମକକ୍ଷ ଧ୍ୱନି ଶୁଣାଯିବ । ଓଡ଼ିଆ ଲୋକେ zero, zoo ପ୍ରଭୃତି ଯେ ଯେମିତି ଉଚ୍ଚାରଣ କରନ୍ତି ଇଂରେଜମାନଙ୍କ ପକ୍ଷରେ ତାହା ବୁଝିବା କଷ୍ଟକର ହୁଏ ।

ଅଭ୍ୟାସ—

| | | | |
|---|---|---|---|
| *crease | kri:s | lids | lidz |
| *decrease | di:'kri:s | dogs | dogz |
| *grease | gri:s | houses | 'hauziz |
| *increase | in'kri:s | mrs | 'misiz |
| release | ri'li:s | scissors | 'sizəz |
| *precise | pri'sais | disease | di'zi:z |
| tortoise | 'thɔ:tes | plays | pleiz |
| *goose | gu:s | zoo | zu: |
| gross | grous | zero | 'ziərou |

ଇଂରେଜ s ଉଚ୍ଚାରଣ କରିବା କଷ୍ଟକର ନୁହେଁ କିନ୍ତୁ s ଠିକ୍ କେଉଁଠି ବ୍ୟବହାର ହେବ ସେତିକ ଜାଣିବା ଦରକାର । ଦେଖନ୍ତୁ ତାରକିତ ଶବ୍ଦମାନଙ୍କରେ ଆମେ s ଜାଗାରେ ଏକ ପ୍ରକାର z ବ୍ୟବହାର କରିଥାଉ ।

[ ʃ, ʒ ]

ଏହି ପ୍ରକାର ଧ୍ୱନି ଓଡ଼ିଆ ଭାଷାରେ ସାଧାରଣତଃ ଶୁଣାଯାଏ ନାହିଁ । ସଂସ୍କୃତ ଉଚ୍ଚାରଣ ଅନୁସାରେ ଆମେ ʃ କୁ ତାଲବ୍ୟ ଶ ର ଉଚ୍ଚାରଣ ବୋଲି କହିପାରୁ । ଓଡ଼ିଆ ଭାଷୀ ଯେମିତି ସବୁ 'ସ, ଷ, ଶ କୁ ଦନ୍ତ୍ୟ ସ ରେ ପରିଣତ କରି ଉଚ୍ଚାରଣ କରନ୍ତି, ବଙ୍ଗଭାଷୀମାନେ ସେହିପରି ଦନ୍ତ୍ୟ ସ କୁ ତାଲବ୍ୟ ଶ କରି ଉଚ୍ଚାରଣ କରନ୍ତି । ହିନ୍ଦୀ ଭାଷାରେ କିନ୍ତୁ ଦନ୍ତ୍ୟ ଓ ତାଲବ୍ୟ ଉଭୟ ଉଚ୍ଚାରଣ କରାଯାଏ । ଇଂରେଜ ଭାଷାର ନାମ English ଶବ୍ଦକୁ ଆମେମାନେ ଭୁଲ ଉଚ୍ଚାରଣ କରିଥାଉ । କିନ୍ତୁ ବଙ୍ଗଭାଷୀମାନେ ତାହା ଠିକ୍ ଉଚ୍ଚାରଣ କରନ୍ତି । ଏହି ତାଲବ୍ୟ ʃ ଉଚ୍ଚାରଣ କଲାବେଳେ ଜିଭର ମଧ୍ୟଭାଗ ତାଳୁ ଆଡ଼କୁ ସମାନ୍ତର ଭାବରେ ଉଠିରହେ । ଦୁଇ ଓଠକୁ ଗୋଲକରି ତଳ ଓଠକୁ ଆଗ ଲମ୍ବାଇ ଦେବାକୁ ହୁଏ । ʃ ଉଚ୍ଚାରଣ ପାଇଁ ଜିହ୍ୱା ଓ ଓଠକୁ ପ୍ରସ୍ତୁତ କରି z z z କରି ଉଚ୍ଚାରଣ କରିବାକୁ ଚେଷ୍ଟାକଲେ ʒ ଉଚ୍ଚାରିତ ହୁଏ । ଏହା ଫରାସୀ ଭାଷାରୁ ଗୃହୀତ ଇଂରେଜ ଶବ୍ଦମାନଙ୍କରେ ଶୁଣାଯାଏ । ଇଂରେଜ s ଏବଂ ʃ ଉଚ୍ଚାରଣରେ ଜିଭର ତଥା ଓଠର ସ୍ଥିତି ପାଇଁ ଚିତ୍ର ଦେଖନ୍ତୁ ।



ʃ ପାଇଁ ଓଠର ସ୍ଥିତି



S ପାଇଁ ଜିଭ ସ୍ଥିତି



ʃ ପାଇଁ ଜିଭ ସ୍ଥିତି

ନଂ ୧୨—ʃ ପାଇଁ ଓଠର ସ୍ଥିତି, s ଓ ʃ ପାଇଁ ଜିଭର ସ୍ଥିତି ।

ଅଭ୍ୟାସ—

| | | | |
|---|---|---|---|
| ship | ʃip | measure | 'meʒə |
| shell | ʃel | pleasure | 'pleʒə |
| shoes | ʃu:z | hosier | houʒə |
| shy | ʃai | transition | træn'siʒn |
| fish | fiʃ | treasure | 'treʒə |
| bush | buʃ | garage | gæra:dʒ |
| sure | ʃuə | vosges | vouʒ |
| show | ʃou | | |
| partial | 'pha:ʃl | | |
| precious | 'preʃəs | | |
| Asia | 'eiʃə | | |

• [ r ]

ଇଂରେଜୀ ଭାଷାରେ ବ୍ୟବହୃତ r ଆମ ଓଡ଼ିଆ 'ର' ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ତେଣୁ ଇଂରେଜୀ r କୁ ଆମେ ସମ୍ପୂର୍ଣ୍ଣ ଭୁଲ ଉଚ୍ଚାରଣ କରିଥାଉ । ଓଡ଼ିଆ 'ର' ଉଚ୍ଚାରଣ କଲାବେଳେ ଜିଭ ଅଗ ଦନ୍ତପାଳି ଦୁଇ ତିନିଥର ପର୍ଯ୍ୟନ୍ତ ଉପର ଦାନ୍ତ ମାଡ଼ିରେ ବାଡ଼େଇ ହୋଇଯାଏ । ତେଲୁଗୁ ଭାଷାରେ 'ର' ର ଉଚ୍ଚାରଣ ଏକ ଦୀର୍ଘ ର୍ର୍ର୍ ପରି ଶୁଣାଯାଏ । କୌଣସି ଭାରତୀୟ ଭାଷାରେ ଇଂରେଜୀ 'ର'ର ସମକକ୍ଷ ଧ୍ୱନି ମିଳେ ନାହିଁ । ଆମ ଓଡ଼ିଆ 'ର' ଏକ କମ୍ପିତ ଧ୍ୱନି, ଯହିଁରେ ଜିହ୍ୱାଗ୍ର ଆନ୍ଦୋଳିତ ହୋଇ ବର୍ତ୍ସ ପ୍ରଦେଶକୁ ଆଘାତ କରେ । କିନ୍ତୁ ଇଂରେଜୀ r ରେ ଜିହ୍ୱାଗ୍ର ଆନ୍ଦୋଳିତ ହେବାର ପ୍ରଶ୍ନ ପର୍ଯ୍ୟନ୍ତ ଉଠେ ନାହିଁ । ତହିଁରେ ଜିହ୍ୱାଗ୍ର ବର୍ତ୍ସ ପ୍ରଦେଶ ପ୍ରତି ଉନ୍ମୁଖ ହୋଇ ରହେ । ବର୍ତ୍ସ ଓ ଜିହ୍ୱାର ମଧ୍ୟସ୍ଥିତ ସଙ୍କୀର୍ଣ୍ଣ ମାର୍ଗରେ ବାୟୁ ଘଷି ହୋଇ ପ୍ରବାହିତ ହୁଏ । ଏହା ଏକ ସଂଘର୍ଷୀ ଧ୍ୱନି । **red, rain** ପ୍ରଭୃତି ଅତି ଛୋଟ ଛୋଟ ଇଂରେଜୀ ଶବ୍ଦ ଉଚ୍ଚାରଣ କଲାବେଳେ ମଧ୍ୟ ଆମେ ବିଦେଶୀ ପରି ଜଣାପଡ଼ୁ । ଏହି ଧ୍ୱନିକୁ ଠିକ୍ ଉଚ୍ଚାରଣ କରିବାପାଇଁ ତଳ ଓଠକୁ କେତେକାଂଶରେ ଆଗକୁ ବାହାର କରିଦେଲେ ଭଲ ।

ଅଭ୍ୟାସ—

| | |
|---|---|
| red | red |
| round | raund |
| write | rait |
| grow | grou |

**ଟିପ୍ପଣୀ**—ଏକେ ତ ଇଂରେଜୀ r ଉଚ୍ଚାରଣ କରିବା କଠିନ, ପୁଣି ଇଂରେଜୀ r କୁ ଯଥା ସ୍ଥାନରେ ବ୍ୟବହାର କରିପାରିବା ଆହୁରି କଠିନ । ଆମେମାନେ ପ୍ରାୟ ସମସ୍ତେ ଇଂରେଜୀ ଶବ୍ଦର ଶେଷରେ ଥିବା r କୁ ଉଚ୍ଚାରଣ କରୁ । କିନ୍ତୁ ତାହା ସମ୍ପୂର୍ଣ୍ଣ ଭୁଲ । your, far, poor ପ୍ରଭୃତି ଶବ୍ଦର ଶେଷ r ଆଦୌ ଉଚ୍ଚାରିତ ହୁଏ ନାହିଁ । କିନ୍ତୁ ଯଦି ଏହି ପ୍ରକାର ଶବ୍ଦମାନଙ୍କ ପରେ ପରେ ସ୍ୱର ଧ୍ୱନି ଥାଏ ତେବେ r ଲୋପ ନ ହୋଇ ତାହା ଉଚ୍ଚାରିତ ହୋଇଥାଏ । ଏହି r କୁ ସଂଯୋଗକାରୀ ବା (Linking) r କୁହାଯାଏ । ବ୍ୟଞ୍ଜନ ବର୍ଣ୍ଣ ପରେ ଥିଲେ ସଂଯୋଗକାରୀ r ଆସେ ନାହିଁ । କିନ୍ତୁ ସ୍ୱରବର୍ଣ୍ଣ ପରେ ଥିଲେ କିପରି ସଂଯୋଗକାରୀ r ଆସେ ଦେଖନ୍ତୁ ।

| | |
|---|---|
| your book | jɔ:buk |
| your own | jɔ:roun |
| far | fa: |
| far away | fa:r'əwei |

କିନ୍ତୁ ଉପରୋକ୍ତ ନିୟମ ସାର୍ବଜନିକ ନୁହେଁ । ଆଜି କାଲିକାର ଇଂରେଜ ଯୁବକମାନଙ୍କ ମଧ୍ୟରେ ଏହି ସଂଯୋଗକାରୀ r ବ୍ୟବହାର ନ କରିବାର ପ୍ରବୃତ୍ତି ଅଧିକତର ଦେଖାଯାଉଛି । fire-engine, hair-oil ପ୍ରଭୃତି ସଂଯୁକ୍ତ ଶବ୍ଦମାନଙ୍କର ମଧ୍ୟସ୍ଥିତ r ଉଚ୍ଚାରିତ ହେବା ଉଚିତ କିନ୍ତୁ ଅଧିକାଂଶ ଇଂରେଜ ଯୁବକମାନେ ବିନା r ରେ ସେମାନଙ୍କର ଉଚ୍ଚାରଣ କରନ୍ତି ।

ଆଉ କେତେକ ସ୍ଥଳରେ ପୂର୍ବ ଶବ୍ଦରେ r ନ ଥିଲେ ମଧ୍ୟ ପରବର୍ତ୍ତୀ ଶବ୍ଦରେ ସ୍ୱର ଥିବାରୁ ବିନା କାରଣରେ କେତେକ r ଯୋଗ କରିଥାନ୍ତି । The idea of it ବାକ୍ୟାଂଶକୁ ଲୋକେ ði ai'diər əvit ପରି ଉଚ୍ଚାରଣ କରନ୍ତି । ବିଦେଶୀମାନଙ୍କର ଏପ୍ରକାର r ଶିଖିବା ଦରକାର ନାହିଁ । ଏ ବିଷୟରେ ସେମାନଙ୍କର ଧାରଣା ଥିବା ଉଚିତ ନଚେତ୍ ଅନେକ ସମୟରେ ଇଂରେଜମାନଙ୍କର ଇଂରେଜୀ ବୁଝିବା ସମ୍ଭବ ହେବ ନାହିଁ । କାରଣ ସେମାନେ India officeକୁ 'indiər 'ɔfis ଏବଂ law of Englandକୁ lɔ:r əv'iŋglənd ଭାବରେ ଉଚ୍ଚାରଣ କରନ୍ତି । ଏହିଭଳି ଅନେକ ଉଦାହରଣ ଇଂରେଜୀ ଭାଷାରେ ଅଛି ।

[ h ]

ଏହି ଧ୍ୱନି ଉଚ୍ଚାରଣ ଓଡ଼ିଆମାନଙ୍କ ପାଇଁ ଆଦୌ କଷ୍ଟସାଧ୍ୟ ନୁହେଁ । ଏ ବିଷୟରେ ବିଶେଷ ବିସ୍ତୃତିର ଆବଶ୍ୟକତା ନାହିଁ । ହାଇ ମାରିଲାବେଳେ ଯେଉଁ ପ୍ରକାର 'ହ'କାର ଧ୍ୱନି ଶୁଣାଯାଏ ତାହା ଏହି ଧ୍ୱନିର ଗୋଟିଏ ସ୍ୱରୂପ ।

(ଘ) [ w, j ]

w ଧ୍ୱନିକୁ ଓଡ଼ିଆଭାଷୀମାନେ ଭୁଲ ଭାବରେ ଉଚ୍ଚାରଣ କରନ୍ତି । ଏହା ଏକ କଣ୍ଠୋଷ୍ଠ୍ୟ ଅର୍ଦ୍ଧସ୍ୱର । ଏହାର ଉଚ୍ଚାରଣ ସ୍ଥାନ ଜିହ୍ୱାର ପଶ୍ଚାଦ୍‌ଭାଗ ଓ କୋମଳ ତାଳୁ । ଓଠ ଦୁଇଟି ଗୋଲାକୃତି ହୋଇ ଆଗକୁ ବାହାରି ଆସନ୍ତି ଏବଂ ଓଠର ମାଂସପେଶୀଗୁଡ଼ିକ ଶକ୍ତ ଭାବରେ ଟାଣି ହୋଇରହନ୍ତି । ଏହି ଧ୍ୱନି ଉଚ୍ଚାରଣ କଲାବେଳେ ଯଦି ଓଠର ମାଂସପେଶୀ ଟାଣି ହେଲା ଭଳି ନ ଲାଗିଲା, ତା ହେଲେ ବୁଝିବାକୁ ହେବ ଯେ ଧ୍ୱନି ଠିକ୍ ହୋଇ ନାହିଁ । ଓଡ଼ିଆମାନେ w ସ୍ଥାନରେ ପ୍ରକୃତରେ ଏକ u ଉଚ୍ଚାରଣ କରିଥାନ୍ତି । wood ଶବ୍ଦକୁ wud ଭଳି ଉଚ୍ଚାରଣ ନ କରି ud ଭଳି ଉଚ୍ଚାରଣ କରିଥାନ୍ତି । କେତେ ଲୋକେ ଏହାକୁ ଏକପ୍ରକାର ବ ଭଳି ଉଚ୍ଚାରଣ କରିଥାନ୍ତି । ତାଙ୍କ with ଶବ୍ଦର ଉଚ୍ଚାରଣ ଆମକୁ 'ଭିଥ୍' ଭଳି ଶୁଣାଯାଉଥାଏ ।

| | | | |
|---|---|---|---|
| ଅଭ୍ୟାସ—wife | waif | want | wɔnt |
| will | wil | wake | weik |
| wool | wul | wave | weiv |

j ଧ୍ୱନିର ଉଚ୍ଚାରଣ ଯ ନୁହେଁ, ଏକ ପ୍ରକାର 'ୟ' । j ଧ୍ୱନି ଉଚ୍ଚାରଣ କଲାବେଳେ ଜିହ୍ୱାର ମାଂସପେଶୀଗୁଡ଼ିକ ଟାଣ ରଖିବାକୁ ହେବ ନଚେତ୍ ଧ୍ୱନି ଅସ୍ୱାଭାବିକ ଶୁଣାଯିବ । ସାଧାରଣତଃ ଇଂରେଜୀ yes (jes) ୟେସ୍ ଶବ୍ଦକୁ ଆମେ ଇଏସ୍ ଭଳି ଉଚ୍ଚାରଣ କରିଥାଉ । 'ୟେ'କୁ ଇଏ ରୂପେ ଉଚ୍ଚାରଣ କରିବା ଆମର ଅଭ୍ୟାସ । କିନ୍ତୁ ତାହା ପ୍ରମାଦପୂର୍ଣ୍ଣ ।

(ଙ) [ʧ, dʒ]

ଓଡ଼ିଆ ଭାଷାଭାଷୀଙ୍କ ପାଇଁ ଏହି ଦୁଇ ଧ୍ୱନି ଉଚ୍ଚାରଣ କରିବା ଆଦୌ କଷ୍ଟସାଧ୍ୟ ନୁହେଁ । ପ୍ରଥମଟି ଓଡ଼ିଆ ଚ ଓ ଦ୍ୱିତୀୟଟି ଓଡ଼ିଆ ଜ ର ସମକକ୍ଷ ଧ୍ୱନି । ତଥାପି ଏମାନଙ୍କ ମଧ୍ୟରେ

ସାମାନ୍ୟ ତଫାତ ଅଛି । ଓଡ଼ିଆ ଚ, ଜ କହିଲାବେଳେ ଜିହ୍ୱା ଏବଂ ତାଳୁ ମଧ୍ୟରେ ଯେଉଁ ସଂଯୋଗ ହୁଏ ତାହା ଯେପରି ଦୁର୍ବଳ, ଇଂରେଜି tʃ dʒ ରେ ସେପରି ନୁହେଁ । ଇଂରେଜି ଉଚ୍ଚାରଣ ପାଇଁ ଜିହ୍ୱାଗ୍ରକୁ ବର୍ତ୍ସ ଉପରେ ଟିକିଏ ଜୋରରେ ଦବାଇ ପବନ ଛାଡ଼ିଲାବେଳେ ଜୋରରେ ଛାଡ଼ିବାକୁ ହୁଏ । ଇଂରେଜିରେ ଏ ପ୍ରକାର ଧ୍ୱନିକୁ **ସ୍ପର୍ଶସଂଘର୍ଷୀ** କହାଯାଏ କାରଣ ଏହି ଧ୍ୱନି ଉଚ୍ଚାରଣରେ ପ୍ରଥମେ **t d** ସ୍ପର୍ଶ ଧ୍ୱନି ସୃଷ୍ଟି ହୋଇ ସଙ୍ଗେ ସଙ୍ଗେ ସଂଘର୍ଷୀ ଧ୍ୱନି ʃ ଏବଂ ʒ ସୃଷ୍ଟି ହୋଇଥାନ୍ତି । ସଂସ୍କୃତ ଭାଷାରେ ଚ ଏବଂ ଜ ଗୋଟିଏ ଗୋଟିଏ ସ୍ପର୍ଶ ଧ୍ୱନି ହୋଇଥିବାରୁ ଗୋଟିଏ ଗୋଟିଏ ଅକ୍ଷର ଦ୍ୱାରା ସେମାନଙ୍କୁ ସୂଚିତ କରାଯାଏ । କିନ୍ତୁ ଇଂରେଜି ଭାଷାରେ ସେଥିରେ ଦୁଇ ପ୍ରକାର ଧ୍ୱନି (ସ୍ପର୍ଶ ଓ ସଂଘର୍ଷ) ଥିବାରୁ ପ୍ରତ୍ୟେକକୁ ଦୁଇଟି ଲେଖା ଅକ୍ଷରରେ ସୂଚିତ କରାଯାଏ । ଓଡ଼ିଆ ଅକ୍ଷର ସଂସ୍କୃତ ଅକ୍ଷର ଉପରେ ପ୍ରତିଷ୍ଠିତ ହୋଇଥିବାରୁ ସଂସ୍କୃତ ଅନୁକରଣରେ ଓଡ଼ିଆରେ ମଧ୍ୟ ଚ ଜ ଗୋଟିଏ ଗୋଟିଏ ଅକ୍ଷରରେ ଲେଖାଯାଏ । ଏହି ବିଧି ପ୍ରାୟ ଅଧିକାଂଶ ଭାରତୀୟ ଭାଷାରେ ଅନୁସୃତ ହୋଇଥାଏ । ତେଲୁଗୁ ଏବଂ ମରାଠୀ ଭାଷା ଯେଉଁମାନେ ଜାଣିଥିବେ ସେମାନେ ଦେଖିଥିବେ ସେହି ଭାଷାମାନଙ୍କରେ ଦୁଇ ପ୍ରକାରର ଚ ଜ ଅଛି । ଗୋଟିଏ ଦନ୍ତ୍ୟ ଏବଂ ଅନ୍ୟଟି ଆମମାନଙ୍କ ଚ ଜ ପରି ତାଳୁଜାତ ଅର୍ଥାତ୍ ତାଳବ୍ୟ । ଅନ୍ତତଃ ତେଲୁଗୁ ଭାଷାରେ ଏହି ଦୁଇ ପ୍ରକାର ତଫାତ ଦେଖାଇବା ପାଇଁ ଦୁଇ ପ୍ରକାର ଅକ୍ଷର ବ୍ୟବହାର କରାଯାଇଥାଏ ।

**dg** ଲେଖାଥିବା ଇଂରେଜି ଶବ୍ଦକୁ ଦକ୍ଷିଣ ଲୋକମାନେ ଉଚ୍ଚାରଣ କଲାବେଳେ ଅଧିକାଂଶ ସମୟରେ **d**କୁ ମଧ୍ୟ ଉଚ୍ଚାରଣ କରିଥାନ୍ତି । ଉଦାହରଣ ସ୍ୱରୂପ **bridge** ଶବ୍ଦକୁ ସେମାନେ ବ୍ରିଡ୍‌ଜ୍ ଭାବରେ ଉଚ୍ଚାରଣ କରନ୍ତି କିନ୍ତୁ ପ୍ରକୃତରେ ତାର ଉଚ୍ଚାରଣ ଗୋଟିଏ ଜ ଧ୍ୱନି ଭଳି ହେବା କଥା ।

ଏଠି ଗୋଟିଏ କଥା ମନେ ରଖିବା ଉଚିତ ଯେ tʃ, dʒ ଦୁଇ ଦୁଇଟି ଅକ୍ଷରରେ ଲେଖା ହେଉଛି ବୋଲି ସେଗୁଡ଼ିକ ଦୁଇ ଦୁଇଟି ଧ୍ୱନି ନୁହନ୍ତି । ପ୍ରକୃତରେ ଗୋଟିଏ ଗୋଟିଏ ଧ୍ୱନି । ସେମାନଙ୍କୁ ଦୁଇ ଧ୍ୱନି ପରି ଉଚ୍ଚାରଣ କଲେ ଅର୍ଥାତ୍ ଆଗେ **t** ଉଚ୍ଚାରଣ କରି ସାରି ପରେ ʃ ଉଚ୍ଚାରଣ କଲେ ଭୁଲ ହେବ ।

| | | | |
|---|---|---|---|
| ଅଭ୍ୟାସ---which | w:ʧ | Greenwich | 'grinidʒ |
| H | eiʧ | Norwich | 'nɔridʒ |
| nature | 'neiʧə | sandwich | sænwidʒ |
| question | 'kwesʧən | Jean | dʒi:n |
| | | injure | 'indʒə |
| righteous | 'raiʧəs | james | dʒeimz |

(ଛ) [ ʔ ]

ଓଡ଼ିଆ ଭାଷାରେ ଏହି ଧ୍ୱନି ସାଧାରଣତଃ ବ୍ୟବହୃତ ହୁଏ ନାହିଁ । ଷ୍ଟାଣ୍ଡାର୍ଡ ଇଂରେଜି ଭାଷାରେ ମଧ୍ୟ ଏହାର ବ୍ୟବହାର ନାହିଁ । ତଥାପି ଏହି ଧ୍ୱନି ବିଷୟରେ ଜାଣିବା ଦରକାର । ଲଣ୍ଡନ ଉପଭାଷା 'କକ୍ନି'ରେ ଏହା ବହୁଳ ପରିମାଣରେ ବ୍ୟବହୃତ ହୁଏ । ତେଣୁ କେବେ କେବେ ଷ୍ଟାଣ୍ଡାର୍ଡ ଇଂରେଜି କହୁଥିବା ଲୋକ ମଧ୍ୟ ଏହାକୁ ଉଚ୍ଚାରଣ କରି ପକାନ୍ତି । ଏହି ଧ୍ୱନି ଏକ ପ୍ରକାର ସ୍ପୃଷ୍ଟ ଖାଦ ଚଳେ । ଏଥିରେ ସ୍ୱରତନ୍ତ୍ରୀ ଦ୍ୱୟ ଏକାଠି ବାନ୍ଧିହୋଇଯାଇ ହଠାତ୍ ଖୋଲିଯାନ୍ତି । ମୟୂରଭଞ୍ଜ ମୁଣ୍ଡାରୀ ଭାଷାରେ ଏହି ଧ୍ୱନି ଶୁଣାଯାଏ । ଏହି ଧ୍ୱନିକୁ ଇଂରେଜୀରେ 'glottal stop' କୁହାଯାଏ । ହିନ୍ଦୀ ଓ ଓଡ଼ିଆରେ ଆମେ ଏହାକୁ କାକଲ୍ୟ ସ୍ପର୍ଶ କହି ପାରିବା । ନିମ୍ନରେ କେତେକ ଶବ୍ଦର ସାଧାରଣ ରୂପ ସଙ୍ଗେ ସଙ୍ଗେ କକ୍ନି ରୂପ ଦିଆ ଯାଇଛି । ସାଧାରଣ ଲଣ୍ଡନ ବାସୀଙ୍କ ଇଂରେଜି ବୁଝିବାକୁ ହେଲେ ଏହି ଧ୍ୱନି ବିଷୟରେ ଜ୍ଞାନ ଥିବା ନିତାନ୍ତ ଦରକାର ।

| | | ସାଧାରଣ ରୂପ | କକ୍ନି ରୂପ |
|---|---|---|---|
| ଅଭ୍ୟାସ— | | | |
| | fortnight | fɔ:tnait | 'fɔ:ʔnaiʔ |
| | Tottenham | 'tɔtnəm | 'tɔʔnəm |
| | paper | 'pheipə | 'PhaiʔƏ |
| | people | 'phi:pl | 'phi:ʔl |
| | little | 'litl | 'ilʔl |
| | mutton | 'mʌtn | 'mʌʔn |

ଗୋଟିଏ ସାଧାରଣ ଖାସକୁ ଫୋନେଟିକ୍ସରେ ʔʌhəʔʌh ଏପରି ଲେଖାଯାଇ ପାରେ ।

———

## ଚତୁର୍ଥ ପରିଚ୍ଛେଦ

## ପରିବର୍ତ୍ତିତ ରୂପ

ଇଂରେଜୀ ଭାଷାରେ ସବୁଠୁ କଠିନ ସମସ୍ୟା ଶବ୍ଦମାନଙ୍କର ପରିବର୍ତ୍ତିତ ରୂପ । ଶବ୍ଦ ଗୁଡ଼ିକ ଏକା ଏକା ବ୍ୟବହୃତ ହେଲାବେଳେ ଯେଉଁଭଳି ଭାବରେ ଉଚ୍ଚାରିତ ହୁଅନ୍ତି, ଅନ୍ୟ ଶବ୍ଦ ସଂଯୋଗରେ ସେମିତି ନ ହୋଇ ବିଶେଷ ଭାବରେ ପରିବର୍ତ୍ତିତ ହୋଇଯାଆନ୍ତି । ଏହି ପରିବର୍ତ୍ତିତ ରୂପକୁ ଠିକ୍ ଭାବରେ ନ ବୁଝିଲେ ଇଂରେଜୀ ଭାଷା ବୁଝିବା କଠିନ । ଆମେମାନେ ଧ୍ୱନି ବିଜ୍ଞାନ ସମ୍ମତ ପଦ୍ଧତିରେ ଇଂରେଜୀ ପଢ଼ି ନ ଥିବାରୁ ପ୍ରତ୍ୟେକ ପଦକୁ ପୂର୍ଣ୍ଣରୂପେ ଉଚ୍ଚାରଣ କରୁ । ଫଳତଃ ଇଂରେଜ କାନକୁ ଏପରି ଉଚ୍ଚାରଣ ଭଙ୍ଗୀଙ୍କର ଅସ୍ୱାଭାବିକ ଜଣାପଡ଼େ । ତା ଛଡ଼ା ଇଂରେଜ ଲୋକ ମାନଙ୍କର କଥା ବୁଝିବା ପାଇଁ ଆମର ଭାରି ଅସୁବିଧା ହୁଏ । ବିଲାତର ସାହେବମାନେ ଯେମିତି କଥା କହନ୍ତି, ସେଥିରେ ସେମାନେ ବହୁତ ଧ୍ୱନି ଗିଳି ଦିଅନ୍ତି ବୋଲି ଆମେରିକାନ୍ ଇଂରେଜମାନେ ଅଭିଯୋଗ କରିଥାନ୍ତି । ଅଥଚ ସେହି ଶବ୍ଦମାନଙ୍କୁ ଆମେରିକାନ୍‌ମାନେ ଅତି ଲମ୍ବାଇ କରି କହନ୍ତି ବୋଲି ବିଲାତି ସାହେବମାନେ ପ୍ରତ୍ୟଭିଯୋଗ କରିଥାନ୍ତି । କିନ୍ତୁ ସେ ଯାହା ହେଉ, ଇଂରେଜୀ ଭାଷାକୁ ଠିକ୍ ଭାବରେ କହିବାକୁ ହେଲେ ପୂର୍ଣ୍ଣ ଏବଂ ସଂକ୍ଷିପ୍ତ-ରୂପ ଉଭୟଙ୍କୁ ଠିକ୍ ଭାବରେ ଜାଣିବା ଉଚିତ । ଉଦାହରଣ ସ୍ୱରୂପ ଦେଖନ୍ତୁ Bread and butter ବାକ୍ୟାଂଶରେ ଆମେ 'and' ଶବ୍ଦକୁ ପୂରାପୂରି ଉଚ୍ଚାରଣ କରୁ ଅଥଚ ଇଂରେଜ ମାନେ କେବଳ n ଉଚ୍ଚାରଣ କରି କାମ ଚଳାନ୍ତି । ନିମ୍ନ ପ୍ରଦତ୍ତ କେତେକ ଶବ୍ଦର ପୂର୍ଣ୍ଣ ଏବଂ ସଂକ୍ଷିପ୍ତ ରୂପ ଦେଖନ୍ତୁ । କେଉଁ ସ୍ଥାନରେ କେଉଁ ରୂପ କିପରି ବ୍ୟବହୃତ ହୁଏ ତାହା ଇଂରେଜୀ ଫୋନେ-ଟିକସ୍ ବହିରୁ ଦେଖିବାକୁ ହେବ ।

| ଇଂରେଜି ଶବ୍ଦ | ପୂର୍ଣ୍ଣରୂପ | ସଂକ୍ଷିପ୍ତ ରୂପ |
|---|---|---|
| a | ei | ə |
| am | æm | əm, m |
| and | ænd | ənd, nd, ən, n |
| are | ɑ: | ə |
| as | æz | əz |
| by | bai | bə, bi |
| can | kæn | ken, kn |
| from | frɔm | frəm, frm |
| do | du: | du, də, d |
| had | hæd | həd, əd, d |
| has | hæz | həz, əz, z, s |
| have | hæv | həv, əv, v |
| he | hi: | i:, hi, i |
| her | hə: | ə:, hə, ə |
| him | him | im |
| is | iz | z, s |
| many | meni | məni, mni |
| must | mʌst | məst, məs |
| not | nɔt | nt, n |
| of | əv | əv, v, ə |
| saint | seint | s[illegible], sən, sint, sin, snt, sn |
| shall | ʃæl | ʃəl, ʃl, ʃ |
| should | ʃud | ʃed, ʃd |
| some | sʌm | səm, sm |
| than | ðæn | ðən, ðn |
| them | ðem | ðəm ðm, əm, m |
| who | hu: | u:, hu, u |
| will | wil | l |
| would | wud | wəd, əd, d |

ବାକ୍ୟରେ ବ୍ୟବହୃତ ସଂକ୍ଷିପ୍ତ ରୂପମାନଙ୍କର ଗୋଟିଏ ଦୁଇଟି ଉଦାହରଣ ଦେଖନ୍ତୁ ।

I have got an egg—ai v gɔt n 'eg
He could have told me—hi: kəd əv'tould mi:
Where shall we go—weə ʃ wi gou ?
It would be a pity—it əd bi ə' piti

କେତେକ ଶବ୍ଦ ଅନ୍ୟ ଶବ୍ଦମାନଙ୍କ ସହିତ ମିଳିତ ହୋଇ ବ୍ୟବହୃତ ହେଲେ ସଂକ୍ଷିପ୍ତ ହୋଇଯାନ୍ତି । ତହିଁରୁ ଅଳ୍ପ କେତୋଟି ନମୁନା ନିମ୍ନରେ ଦିଆଗଲା । ସଂଯୁକ୍ତ ଶବ୍ଦରେ ଦ୍ୱିତୀୟ ଶବ୍ଦଟିର ପରିବର୍ତ୍ତିତ ଫୋନେଟିକ ରୂପ ଲକ୍ଷ୍ୟ କରିବାର କଥା ।

| ପୂର୍ଣ୍ଣରୂପ | | ମିଳିତ ସଂକ୍ଷିପ୍ତରୂପ | |
|---|---|---|---|
| berry | 'beri | gooseberry | 'guzbri |
| most | moust | topmost | 'tɔpməst |
| penny | 'peni | halfpenny | 'heipni |
| sense | sens | nonsense | 'nɔnsns |

ପ୍ରାୟ ସମସ୍ତ ଭାଷାରେ ସମୀକରଣ ପ୍ରଣାଳୀରେ ଧ୍ୱନି ପରିବର୍ତ୍ତନ ହୋଇଥାଏ । ସଂସ୍କୃତ ଉତ୍‌+ମୁକ୍ତ, ଉନ୍ମୁକ୍ତ ଏବଂ ତତ୍‌+ଜଳ, ତଜ୍ଜଳ ଉଦାହରଣ ସମସ୍ତଙ୍କୁ ଜଣା । ଇଂରେଜୀ ଭାଷାରେ ସମୀକରଣର ଅଭାବ ନାହିଁ । ଧ୍ୱନି ମାନଙ୍କର ପାରସ୍ପରିକ ସାନ୍ନିଧ୍ୟ ଯୋଗୁଁ ଏହି ପରିବର୍ତ୍ତନ ହୋଇଥାଏ । ନିମ୍ନ ଉଦାହରଣରେ ଏହି ପରିବର୍ତ୍ତନ ଲକ୍ଷ୍ୟ କରନ୍ତୁ ।

News—nju:z paper—'pheipə
Newspaper—'nju:speipə;
five—faiv pence—pens
Fivepence—faifpəns.

ଟିପ୍ପଣୀ—ଏହି ପ୍ରକାର ପୂର୍ଣ୍ଣରୂପ ଏବଂ ସଂକ୍ଷିପ୍ତ ରୂପ ଯେ କେବଳ ଇଂରେଜୀ ଭାଷାରେ ଦେଖାଯାଏ ତା ନୁହେଁ । ସମସ୍ତ ଭାଷାରେ ଅଳ୍ପ ବହୁତ ଏହି ପଦ୍ଧତି ପ୍ରଚଳିତ । ଆମେ ଘରଘରରେ କଥାବାର୍ତ୍ତା ହେଲାବେଳେ ଯଦି ନିଜ କଥାକୁ ଲକ୍ଷ୍ୟ କରି ଯାଇବା ତା ହେଲେ ସେଥିରେ ଅନେକ ସଂକ୍ଷିପ୍ତ ରୂପ ଦେଖି ପାରିବା । କେତେକ ଉଦାହରଣ ଦେଖନ୍ତୁ ।

| ପୂର୍ଣ୍ଣରୂପ | ସଂକ୍ଷିପ୍ତ ରୂପ |
| --- | --- |
| ନୂଆବୋହୂ | ନୂଆ'ଉ |
| କପିଳାଦାଦ | କପିଳା'ଦ |
| ମଧୁନନା | ମଧୁ'ନା |
| ତାହାହେଲେ | ତା'ଏଲେ |

## ପଞ୍ଚମ ପରିଚ୍ଛେଦ

### ଷ୍ଟ୍ରେସ୍ ବା ବଳାଘାତ

ଯେ କୌଣସି ଜଣାଶୁଣା ଇଂରେଜୀ ଶବ୍ଦକୋଷ ଦେଖିଲେ ଦେଖାଯିବ ଯେ ସେଥିରେ କେତେକ ଶବ୍ଦ ଉପରେ (') ଏହିପରି ଏକ ଚିହ୍ନ ଦିଆଯାଇଛି । ଏହି ଚିହ୍ନକୁ ଷ୍ଟ୍ରେସ୍ ଚିହ୍ନ କହନ୍ତି । ଷ୍ଟ୍ରେସ୍‌କୁ ଓଡ଼ିଆରେ ଆମେ ସ୍ୱରାଘାତ କିମ୍ବା ବଳାଘାତ ବୋଲି କହିପାରିବା । ଷ୍ଟ୍ରେସ୍ ଚିହ୍ନଟି ଯେଉଁ ସିଲେବ୍‌ଲ (ଅକ୍ଷର) ଉପରେ ଥାଏ ତାହା ଅଧିକ ଶକ୍ତି ସହିତ ଉଚ୍ଚାରିତ ହୁଏ ବୋଲି ବୁଝିବାକୁ ହେବ । କେବଳ ଷ୍ଟ୍ରେସ୍‌ର ସ୍ଥାନ ନେଇ ଗୋଟିଏ ଶବ୍ଦର ଦୁଇଟି ରୂପ ହୋଇପାରେ । ଉଦାହରଣ ସ୍ୱରୂପ Export ଶବ୍ଦର ଦୁଇଟି ରୂପ ଦେଖନ୍ତୁ ।

'Export (ବିଶେଷ୍ୟ)
Ex'port (କ୍ରିୟା)

ପ୍ରଥମଟିରେ Ex ଉପରେ ଷ୍ଟ୍ରେସ୍ ଦିଆଯାଇଛି ଓ ଦ୍ୱିତୀୟଟିର port ଉପରେ ଷ୍ଟ୍ରେସ୍ ଦିଆଯାଇଛି । ଅର୍ଥାତ୍ ପ୍ରଥମ ଶବ୍ଦର ଉଚ୍ଚାରଣରେ 'Ex ଭାଗଟି port ଭାଗଠାରୁ ଅଧିକ ସ୍ପଷ୍ଟ ଶୁଣାଯାଏ ଏବଂ ଦ୍ୱିତୀୟ ଶବ୍ଦର 'port ଭାଗଟି Ex ଭାଗ ଅପେକ୍ଷା ଅଧିକ ସ୍ପଷ୍ଟ ଶୁଣାଯାଏ । ଗ୍ରାଫ କାଟି ଦେଖିଲେ ଉପରୋକ୍ତ ଦୁଇଟି ଶବ୍ଦ ଦୁଇଟି ଭିନ୍ନ ରୂପ ଧାରଣ କରିବ । ଯଥା—

'Export ∧__________
Ex'port _____ ∧ _____

ଏଥିରୁ ସ୍ପଷ୍ଟ ଜଣାଯିବ ଯେ ଷ୍ଟ୍ରେସ୍ ଭାଗଟି ଷ୍ଟ୍ରେସ୍‌ହୀନ ଭାଗ ଅପେକ୍ଷା ଉଚ୍ଚରେ ଅର୍ଥାତ୍ ତାହା ଶୁଣିବା ପାଇଁ ଅଧିକ ସ୍ପଷ୍ଟ । ଟ୍ରେକୋଗ୍ରାଫ୍ ଚିତ୍ରରୁ ଷ୍ଟ୍ରେସ୍ ଯୁକ୍ତ ଓ ଷ୍ଟ୍ରେସ୍‌ହୀନ

ଧ୍ୱନିମାନଙ୍କର ପାର୍ଥକ୍ୟ ସ୍ପଷ୍ଟ ଜଣାଯାଏ । ଯେଉଁଠି ଷ୍ଟ୍ରେସ୍ ଥାଏ ସେଠି ଅଧିକ ଶକ୍ତି ପ୍ରଯୁକ୍ତ ହେଉଥିବାରୁ ତାହା ଘନ କଳା ଏବଂ ଯେଉଁଠି ଷ୍ଟ୍ରେସ୍ ନ ଥାଏ, ସେଠି ଶକ୍ତି ପ୍ରୟୋଗ ଅଭାବରୁ ତହିଁରେ କଳାର ଘନତା ସେତେ କମ ଦେଖାଯାଏ । ଲେଖକର 'ଧ୍ୱନିବିଜ୍ଞାନ' ପୁସ୍ତକର ବଳାଘାତ ଚରିତ୍ରରେ ଏହିପରି ଚିତ୍ର ଦେଖାଯାଇ ପାରେ ।

କୌଣସି ବକ୍ତା କଥା କହିଲାବେଳେ ସମସ୍ତ ଧ୍ୱନି ଉପରେ ସମାନ ଶକ୍ତି ପ୍ରୟୋଗ କରନ୍ତି ନାହିଁ । ଯେଉଁ ଧ୍ୱନି ଉପରେ ଅଧିକ ଶକ୍ତି ପ୍ରୟୋଗ କରନ୍ତି ସେଗୁଡ଼ିକୁ ଷ୍ଟ୍ରେସ୍, ବାକିଗୁଡ଼ିକ ଷ୍ଟ୍ରେସ୍ ହୀନ । ଓଡ଼ିଆ ଭାଷାରେ ଷ୍ଟ୍ରେସ୍ ନେଇ କୌଣସି ବ୍ୟାକରଣ ଗତ ଭେଦ ହୁଏ ନାହିଁ । କିନ୍ତୁ ଇଂରେଜୀର ବିଶେଷ୍ୟ ଓ କ୍ରିୟାର ପ୍ରଭେଦ ଏହି ଷ୍ଟ୍ରେସ୍ ଉଚ୍ଚାରଣର ସ୍ଥାନ ଉପରେ ନିର୍ଭର କରେ । ବିଶେଷ୍ୟ ପଦରେ ଷ୍ଟ୍ରେସ୍ ପ୍ରଥମ ସିଲେବ୍‌ଲ ଉପରେ ରହେ ଓ କ୍ରିୟାପଦରେ ଷ୍ଟ୍ରେସ୍ ଦ୍ୱିତୀୟ ସିଲେବ୍‌ଲ ଉପରେ ରହେ । ମାତ୍ର ଆମେମାନେ ଇଂରେଜୀ ଉଚ୍ଚାରଣରେ ଏ କଥା ଆଦୌ ବିଚାର କରୁ ନାହିଁ ବୋଲି ଆମ ଇଂରେଜୀ ଅସ୍ୱାଭାବିକ ଶୁଣାଯାଏ ।

ଏଠାରେ ସିଲେବ୍‌ଲ କଥାଟି ଟିକିଏ ସ୍ପଷ୍ଟୀକରଣ କରିଦେବା । ଯେ କୌଣସି ସିଲେବ୍‌ଲର ମୂଳାଧାର ଗୋଟିଏ ସ୍ୱର । ସାଧାରଣତଃ ଗୋଟିଏ ଶବ୍ଦରେ ଯେତୋଟି ସ୍ୱର ଥାଏ ସେହି ଶବ୍ଦରେ ସେତୋଟି ସିଲେବ୍‌ଲ ଥାଏ ବୋଲି ବୁଝିବାକୁ ହେବ । ସିଲେବ୍‌ଲ ବିଚାର କରିବାକୁ ଗଲାବେଳେ ଇଂରେଜୀ ବନାନକୁ ନ ଦେଖି ତାର ଧ୍ୱନିକୁ ଦେଖିବାକୁ ହେବ । ଉଦାହରଣ ସ୍ୱରୂପ Export (eks'pɔ:t) ଶବ୍ଦକୁ ଦେଖନ୍ତୁ । ଏଥିରେ ଦୁଇଟି ସିଲେବଲ ଅଛି, ଗୋଟିଏ eks, e କୁ କେନ୍ଦ୍ର କରି ରହିଛି ଏବଂ ଅନ୍ୟଟି pɔ:t, ɔ:କୁ କେନ୍ଦ୍ର କରି ରହିଛି । ସ୍ୱର ହିଁ ସିଲେବ୍‌ଲର ପ୍ରାଣକେନ୍ଦ୍ର କିନ୍ତୁ କେତେକ ବ୍ୟଞ୍ଜନ ଅଛନ୍ତି ଯେଉଁମାନେ ସ୍ୱର ପରି ମଧ୍ୟ ସିଲେବଲର ପ୍ରାଣକେନ୍ଦ୍ର । ହୋଇ ନିଜେ ନିଜେ ଗୋଟିଏ ସିଲେବ୍‌ଲ ହୋଇ ପଡ଼ନ୍ତି । little [ 'litl ] ଶବ୍ଦ ଦେଖନ୍ତୁ ଏଥିରେ ଗୋଟିଏ ସ୍ୱର ଥିବାରୁ ଏହା ଗୋଟିଏ ସିଲେବ୍‌ଲ ପରି ଦେଖା ଯାଉଛି, କିନ୍ତୁ ପ୍ରକୃତରେ ଏହା ଦୁଇଟି ସିଲେବ୍‌ଲ । କାରଣ ଶେଷରେ ଯେଉଁ l ଅଛି ତାହା ବ୍ୟଞ୍ଜନ ହେଲେ ବି ତାହା ଏକ ସ୍ୱତନ୍ତ୍ର ସିଲେବ୍‌ଲ ।

ବର୍ତ୍ତମାନ ଆମେ ସେହି ଗ୍ରାଫଚିତ୍ର ଉଦ୍ଧୃତକୁ ଫେରିଯିବା । ସେଥିରେ ଆମେ ଦେଖି ପାରିବା ଗୋଟିଏ ଶବ୍ଦର ଦୁଇଟି ରୂପ ଅଛି । କିନ୍ତୁ ଆମେ ଦୁଇଟିଯାକ ରୂପ

ବ୍ୟବହାର ନ କରି ସବୁବେଳେ ଯେକୌଣସି ରୂପ ବ୍ୟବହାର କରୁ । ତାହାର କାରଣ ହେଉଛି, ଆମକୁ ମୋଟେ ଜଣାଯାଏ ନାହିଁ ଯେ ଇଂରେଜୀ ଭାଷାରେ ଷ୍ଟ୍ରେସର ମୂଲ୍ୟ ଏତେ ବେଶି ଏବଂ ଏହି ଷ୍ଟ୍ରେସ ଭୁଲ ହୋଇଗଲେ ଇଂରେଜୀ ଭାଷା ଆଦୌ ବୁଝି ହେବ ନାହିଁ । କେଡେନ୍ ହେବେନ୍ ବିଶ୍ୱବିଦ୍ୟାଳୟର ଜଣେ ଶିକ୍ଷୟିତ୍ରୀ ଫୋନେଟିକ୍ସ ପଢ଼ାଇବା ପାଇଁ ଭାରତକୁ ଆସିଥିଲେ । ସେ ଭାରତୀୟ ଛାତ୍ରମାନଙ୍କର ଇଂରେଜୀ ବଡ଼ କଷ୍ଟରେ ବୁଝୁଥିଲେ । ତାଙ୍କ ମତରେ ସେ କହିଲେ ଭାରତୀୟ ଛାତ୍ରମାନେ ଇଂରେଜୀରେ ଠିକ୍ ସ୍ଥାନରେ ଷ୍ଟ୍ରେସ୍ ବ୍ୟବହାର କରୁ ନ ଥିବାରୁ ତାଙ୍କ ପକ୍ଷରେ ସେମାନଙ୍କର ଇଂରେଜୀ ବୁଝିବା କଷ୍ଟକର ହେଉଥିଲା । ଲଣ୍ଡନରେ ଥରେ ମୁଁ ବସ୍‌ରେ ଯିବାବେଳେ 'ଟ୍ରାଫାଲଗାର ସ୍କୋୟାରକୁ' ଗୋଟିଏ ଟିକେଟ ମାଗିଲି । ବସ୍ କଣ୍ଡକ୍ଟର ବୁଝି ନ ପାରିବାରୁ ମୋ ପାଖରେ ବସିଥିବା ଜଣେ ଇଂରେଜ ତାଙ୍କୁ ବୁଝାଇଦେଲେ । ପରେ ମୁଁ ମୋ ଫୋନେଟିକସ୍ ଶିକ୍ଷକଙ୍କ ସହିତ ଆଲୋଚନା କରି ଦେଖିଲି ଯେ ମୁଁ ଷ୍ଟ୍ରେସକୁ ଅସ୍ଥାନରେ ପ୍ରୟୋଗ କରିଥିବାରୁ ବସ୍ କଣ୍ଡକ୍ଟର ବୁଝି ପାରି ନ ଥିଲେ । Trafalgar ରେ ଦ୍ୱିତୀୟ ସିଲେବଲ 'fal ଉପରେ ଷ୍ଟ୍ରେସ ରହିବା କଥା, କିନ୍ତୁ ମୁଁ ଷ୍ଟ୍ରେସ ରଖିଥିଲି ପ୍ରଥମ ସିଲେବଲ 'Tra ଉପରେ । ତେଣୁ କଣ୍ଡକ୍ଟରଙ୍କ ପକ୍ଷରେ ବୁଝିବା କଷ୍ଟକର ହେଲା ।

ତାହେଲେ ଇଂରେଜୀ ଶବ୍ଦରେ କେଉଁଠି ଷ୍ଟ୍ରେସ୍ ହେବ ଏବଂ କେଉଁଠି ଷ୍ଟ୍ରେସ୍ ହେବନି କେମିତି ଜାଣିବା ? ଜାଣିବାର କୌଣସି ସୁଗମ ଉପାୟ ନାହିଁ । ହିନ୍ଦୀରେ କେଉଁଠି ସ୍ତ୍ରୀଲିଙ୍ଗ କେଉଁଠି ପୁଲିଙ୍ଗ ହେବ କେମିତି ଜାଣିବା ? ରାସ୍ତା ପୁଲିଙ୍ଗ ଅଥଚ ସଡ଼କ ସ୍ତ୍ରୀଲିଙ୍ଗ ବୋଲି ଜାଣିବାର ଉପାୟ କ'ଣ ? ଉପାୟ କେବଳ ଭାଷା ସଙ୍ଗେ ଅଧିକ ପରିଚୟ ଓ ଅଭ୍ୟାସ । ଭାଷାକୋଷ ଦେଖିଲାବେଳେ ଷ୍ଟ୍ରେସ୍ ପ୍ରତି ଦୃଷ୍ଟିଦେବା ନିହାତି ଦରକାର । ଅଭ୍ୟାସ କରି ଶେଷରେ ଏକ ପ୍ରକାର ଧାରଣା ହୋଇଯିବା ଛଡ଼ା ଅନ୍ୟ ଉପାୟ ନାହିଁ । ରେଡ଼ିଓରୁ ବି. ବି. ସି ପ୍ରୋଗ୍ରାମ ଶୁଣନ୍ତୁ । କିମ୍ବା କୌଣସି ଇଂରେଜ ଲୋକ ମୁହଁରୁ କଥା ଶୁଣନ୍ତୁ, ଦେଖିବେ କେତେକ ଧ୍ୱନି ସ୍ପଷ୍ଟ ଶୁଣା ଯାଉଛି ଓ ଆଉ କେତେକ ଟିକେ ହୋଇ ଯାଉଛି । ଯେଉଁ ଧ୍ୱନି ସ୍ପଷ୍ଟ ଶୁଣା ଯାଉଛି ସେଗୁଡ଼ିକୁ ଷ୍ଟ୍ରେସ୍ ଧ୍ୱନି ବୋଲି ସ୍ଥୂଳତଃ ଧରି ନିଆଯାଇ ପାରେ । କିନ୍ତୁ ସବୁବେଳେ ଏହା ସତ୍ୟ ହୁଏ ନାହିଁ । ଷ୍ଟ୍ରେସ୍ ଥାଇ ମଧ୍ୟ ଧ୍ୱନି ଅସ୍ପଷ୍ଟ ହୋଇପାରେ ।

କେବଳ ଅଧିକ ଶକ୍ତି ସହିତ କହିଲେ ଯେ ଷ୍ଟ୍ରେସ୍ ସୂଚିତ ହୁଏ ତା ନୁହେଁ । ଷ୍ଟ୍ରେସ୍‌କୁ ସୂଚିତ କରିବା ପାଇଁ ବକ୍ତା ଅନେକ ଉପାୟ ଅବଲମ୍ବନ କରି ପାରନ୍ତି ଯଥା, ହାତମୁଠା ଉଠାଇବା, ଗୋଡ଼ ପିଟିବା, ଟେବୁଲ ବାଡ଼େଇବା, ଆଖି ଠାରିବା, ମୁଖ ବିକୃତ କରିବା ଇତ୍ୟାଦି । ଏହି ସମସ୍ତ ଶାରୀରିକ କ୍ରିୟାକୁ ମଧ୍ୟ ଷ୍ଟ୍ରେସ୍ ଭିତରେ ନିଆଯାଇଥାଏ ।

ଇଂରେଜି ଭାଷାରେ ଷ୍ଟ୍ରେସ୍ ସୂଚିତ କରିବାର ସାଧାରଣ ନିୟମ ହେଉଛି ଏକ୍-ସିଲେବ୍‌ଲ ଶବ୍ଦରେ ଷ୍ଟ୍ରେସ୍ ଚିହ୍ନିତ କରାଯାଏ ନାହିଁ । କିନ୍ତୁ ଏକାଧିକ ସିଲେବ୍‌ଲ ଥିବା ଶବ୍ଦରେ ଷ୍ଟ୍ରେସ୍ ସୂଚିତ କରାଯାଇ ଥାଏ । ଉଦାହରଣ ସ୍ୱରୂପ pin ଶବ୍ଦରେ ଷ୍ଟ୍ରେସ୍ ସୂଚିତ କରାଯାଏ ନାହିଁ । କିନ୍ତୁ 'Export ଶବ୍ଦରେ କରାଯାଏ । ପୁଣି ଯେଉଁଠି ପ୍ରଧାନ ଅପ୍ରଧାନ ଦୁଇ ପ୍ରକାର ଷ୍ଟ୍ରେସ୍ ଥାଏ ସେଠି ପ୍ରଧାନ ଷ୍ଟ୍ରେସ୍‌କୁ ସିଲେବ୍‌ଲ ଉପରେ ଚିହ୍ନିତ କରି ଅପ୍ରଧାନ ଷ୍ଟ୍ରେସ୍‌କୁ ସିଲେବ୍‌ଲ ତଳେ ଚିହ୍ନିତ କରାଯାଇ ଥାଏ । ଉଦାହରଣ ସ୍ୱରୂପ evaporation ଶବ୍ଦ ନିଆଯାଉ । ଅପ୍ରଧାନ ଓ ପ୍ରଧାନ ଷ୍ଟ୍ରେସ୍ ଦେଇ ଲେଖିଲେ ତାହା ev,aporation ପରି ଦେଖାଯିବ । ପ୍ରଥମ ଷ୍ଟ୍ରେସ୍‌ଟି ଅପ୍ରଧାନ ଓ ଦ୍ୱିତୀୟ ଷ୍ଟ୍ରେସ୍‌ଟି ପ୍ରଧାନ ।

ନିମ୍ନରେ କେତେକ ଇଂରେଜି ଶବ୍ଦର ଷ୍ଟ୍ରେସ୍ ସୂଚିତ ହେଲା । ଫୋନେଟିକ୍ ଅକ୍ଷରର ବହୁଳ ବ୍ୟବହାର ନ କରିବା ପାଇଁ ସାଧାରଣ ଅକ୍ଷରରେ ଲେଖି ଷ୍ଟ୍ରେସ୍ ସୂଚିତ କରାଯାଇଛି ।

ଏକ ଷ୍ଟ୍ରେସ୍—

'import (ବିଶେଷ୍ୟ)
im'port (କ୍ରିୟା)
'subject (ବିଶେଷ୍ୟ)
sub'ject (କ୍ରିୟା)
'photograph
pho'tographer
photo'graphic

ଦୁଇ ଷ୍ଟ୍ରେସ୍—
'un'known
'un'pack
'mis'print
'under'secretary
'vice'chancellor
'misrepren'tation
'dis'loyal
'disco'nnect
'insin'cere
'i'lligal
'ex'president
'half'finished
'pre'paid
'over'ripe
'Sub-'station
'thir'teen
'four'teen
'fif'teen
'six'teen
'seven'teen
nine'teen

ଦୁଇ ଷ୍ଟ୍ରେସ୍ ଥିବା କେତେକ ନାମ
'Bun'tu
'Ben'gal
'Ber'lin
'Can'ton
'Car'lyle
'Pana'ma
'Dan'dee
'Pe'king
'Picca'dilly
'white'hall

ଇଂରେଜୀ ଭାଷାରେ ଷ୍ଟ୍ରେସ୍ ବ୍ୟବହାର କିପରି କଷ୍ଟସାଧ୍ୟ ତା'ର ଗୋଟିଏ ଅଧେ ଉଦାହରଣ ନିଆଯାଉ । ଯେଉଁମାନେ ଷ୍ଟ୍ରେସ୍‌ର ଏହି ସ୍ୱରୂପ ନ ଜାଣନ୍ତି, ସେମାନେ କେତେ ଭୁଲ କରି କରୁଥିବେ ଏହି ଉଦାହରଣ ଦେଖିଲେ ସହଜରେ ଜାଣି ପାରିବେ । ଗୋଟିଏ ଶବ୍ଦ 'picca 'dilly ନିଅନ୍ତୁ । ସେଥିରେ ଦୁଇଟି ଷ୍ଟ୍ରେସ୍ ଅଛି, ଦେଖନ୍ତୁ ଅନ୍ୟାନ୍ୟ ଶବ୍ଦ ସଂଯୋଗରେ ଆସିଲା ପରେ ପିକାଡ଼ିଲି ଶବ୍ଦର ଷ୍ଟ୍ରେସ୍ କେମିତି ବଦଳୁଛି ।

'picca'dilly (କ) 'close to picca'dilly
(ଖ) 'piccadilly 'circus

(କ) ଉଦାହରଣରେ close ଉପରେ ଷ୍ଟ୍ରେସ୍ ଥିବାରୁ picca ଉପରୁ ଷ୍ଟ୍ରେସ୍ ଉଠିଗଲା ।

(ଖ) ଉଦାହରଣରେ circus ଉପରେ ଷ୍ଟ୍ରେସ୍ ଥିବାରୁ dilly ଉପରୁ ଷ୍ଟ୍ରେସ୍ ଲୁଛି ଗଲା । କାରଣ ଇଂରେଜୀରେ ଦୁଇଟି ଷ୍ଟ୍ରେସ୍ ଥିବା ଶବ୍ଦର ପୂର୍ବରେ ଯଦି ଅନ୍ୟ ଏକ ଷ୍ଟ୍ରେସ ରହେ ତେବେ ଦୁଇଟି ଷ୍ଟ୍ରେସ୍ ମଧ୍ୟରୁ ପ୍ରଥମ ଷ୍ଟ୍ରେସ୍ଟି ଲୋପ ପାଇଥାଏ (କ ଦେଖନ୍ତୁ) କିନ୍ତୁ ଅନ୍ୟ ଷ୍ଟ୍ରେସ୍ଟି ଯଦି ପରେ ରହେ ତେବେ ଦ୍ୱିତୀୟ ଷ୍ଟ୍ରେସ୍ଟି ଲୋପ ହୋଇ ଯାଏ (ଖ ଦେଖନ୍ତୁ) । ବାସ୍ତବରେ ଭାଷା ସହିତ ଗମ୍ଭୀର ଭାବରେ ପରିଚିତ ନ ହେଲେ ବିଦେଶୀ ପକ୍ଷରେ ଏହି ନିୟମକୁ ଆୟତ୍ତ କରିବା କଷ୍ଟସାଧ୍ୟ । ଅନ୍ୟ ଗୋଟିଏ ଦୁଇଟି ଉଦାହରଣ ଦେଖନ୍ତୁ । ଦୁଇ-ଷ୍ଟ୍ରେସ୍-ସମ୍ବଳିତ ଶବ୍ଦ ବାକ୍ୟାଂଶରେ ବ୍ୟବହୃତ ହେଲା ବେଳେ ଷ୍ଟ୍ରେସ୍ରେ କିପରି ପରିବର୍ତ୍ତନ ହେଉଛି ସେଥିରୁ ଜାଣି ପାରିବେ ।

| | |
|---|---|
| 'un 'known | 'quite un 'known |
| | 'unknown 'warrior |
| 'hand 'made | 'hand made 'paper |
| 'pre 'paid | 'prepaid 'telegram |
| 'four 'teen | 'fourteen 'shillings |
| | 'just four 'teen |

ବ୍ରିଟିଶ ଇଂରେଜୀ ଏବଂ ଆମେରିକାନ୍ ଇଂରେଜୀରେ ଅନେକ ସ୍ଥଳରେ ଷ୍ଟ୍ରେସ୍ର ସ୍ଥାନ ଭିନ୍ନ । ସେଥିପାଇଁ ଜଣେ ଇଂରେଜ କହୁଛନ୍ତି କି ଆମେରିକାନ କହୁଛନ୍ତି, କେବଳ ଷ୍ଟ୍ରେସ୍ରୁ ମଧ୍ୟ ଜଣାଯାଇ ପାରିବ । ନିମ୍ନ ପ୍ରଦତ୍ତ ଶବ୍ଦ ମାନଙ୍କରେ ଦେଖିବେ ବ୍ରିଟିଶ ଇଂରେଜୀରେ ମାତ୍ର ଗୋଟିଏ ଷ୍ଟ୍ରେସ୍ ବ୍ୟବହାର କରା ଯାଇଛି । ଅଥଚ ଆମେରିକାନ୍ ଇଂରେଜୀରେ ଦୁଇଟି ଲେଖା ଷ୍ଟ୍ରେସ୍ ବ୍ୟବହାର କରା ଯାଇଛି; ସୁତରାଂ ଦୁଇଟି ଉଚ୍ଚାରଣ ସ୍ପଷ୍ଟ ଭାବରେ ଭିନ୍ନ ।

| ଆମେରିକାନ ଉଚ୍ଚାରଣ | ବ୍ରିଟିଶ୍ ଉଚ୍ଚାରଣ |
|---|---|
| 'li,brary | 'library |
| 'terri,tory | 'territory |
| 'cere,mony | 'ceremony |

ଇଂରେଜି ଭାଷାରେ ଷ୍ଟ୍ରେସ୍‌ଜ୍ଞାନ କ'ଣ ଦରକାର ଏବଂ ଏହି ଷ୍ଟ୍ରେସ୍ ଜ୍ଞାନ ନ ଥିଲେ ଇଂରେଜି ଭାଷା କହିବାରେ କେମିତି ଅସୁବିଧା ହୁଏ, ତା ଆଗାମୀ ଅନୁଚ୍ଛେଦରେ ଅଧିକ ସ୍ପଷ୍ଟ ଭାବରେ ଦେଖି ପାରିବେ ।

## ଇଣ୍ଟୋନେସନ୍

କୌଣସି ଲୋକ ବିଦେଶୀ ଭାଷା କହିଲାବେଳେ ଶ୍ରୋତାମାନେ ଏହିପରି ଟିପ୍ପଣୀ ଦେଇଥିବାର ଆମେ ଶୁଣୁ, ଯଥା—ସେ ଲୋକର ଇଣ୍ଟୋନେସନ୍‌ଟା ଭଲ, କିମ୍ବା ତା'ର ଇଣ୍ଟୋନେସନ୍ ଭଲ ନୁହେଁ । ଏହି ଇଣ୍ଟୋନେସନ ତା' ହେଲେ କ'ଣ ? ସହଜ କଥାରେ କହିବାକୁ ଗଲେ ଇଣ୍ଟୋନେସନର ଅର୍ଥ ହେଉଛି କହିବାର ଢଙ୍ଗୀ କିମ୍ବା କଥା କହିବାର ଲହର । କଥା କହିଲା ବେଳେ କଥାଟା ଏକ ସ୍ଥାନରେ ରହେ ନାହିଁ, କେତେବେଳେ ନୀଚ ସ୍ଥାନରେ୍ କେତେବେଳେ ଉଚ୍ଚ ସ୍ଥାନରେ, କେତେବେଳେ ଅବା ମଧ୍ୟମ ସ୍ଥାନରେ ରହେ । ସ୍ଥାନର ଏହି ଉଚ୍ଚନୀଚ କ୍ରମକୁ ସ୍ୱରଲହରୀ କିମ୍ବା ଇଣ୍ଟୋନେସନ କୁହାଯାଏ । ମାଳ ପର୍ବତର ଉଚ୍ଚନୀଚ ଶିଖରମାଳା ଏବଂ ସାଗରର ଉଚ୍ଚନୀଚ ଲହରୀ ପରି ସ୍ୱର ଲହରୀର କଳ୍ପନା କରାଯାଇ ପାରେ । ଧ୍ୱନିବିଜ୍ଞାନରେ କୌଣସି ବାକ୍ୟର ସ୍ୱର ଲହରକୁ ବିଖଣ୍ଡିତ ରେଖା ଦ୍ୱାରା କିମ୍ବା ଏକ ନିରବଚ୍ଛିନ୍ନ ରେଖା ଦ୍ୱାରା ସୂଚିତ କରାଯାଇ ପାରେ । ଉଦାହରଣ ସ୍ୱରୂପ I go home ଇଂରେଜୀ ବାକ୍ୟକୁ ଖଣ୍ଡିତ ରେଖା ଦ୍ୱାରା କିମ୍ବା ନିରବଚ୍ଛିନ୍ନ ରେଖାଦ୍ୱାରା ସୂଚିତ କରାଯାଇ ପାରେ ।

|  | I | go | home |
|---|---|---|---|
| (କ) | — | — | ⌐ |
| (ଖ) | ———————————— |  |  |

I go home ବାକ୍ୟରେ I ଉଚ୍ଚସ୍ଥାନରେ go ମଧ୍ୟମ ସ୍ଥାନରେ ଓ home ନିମ୍ନ ସ୍ଥାନରେ ଉଚ୍ଚାରିତ ହୁଏ । ତେଣୁ ପ୍ରତ୍ୟେକ ଶବ୍ଦ ପାଇଁ ଗୋଟିଏ ଗୋଟିଏ ଖଣ୍ଡିତ ରେଖା ଦେଖାଇଲେ (କ) ରୂପ ଦେଖାଯିବ କିନ୍ତୁ ସେ ସମସ୍ତ ଖଣ୍ଡିତ ରେଖାକୁ ଯୋଡ଼ିଦେଲେ (ଖ) ରୂପ ସମ୍ପନ୍ନ ହେବ । (ଖ) ରୂପହିଁ ଅଧିକ ବାସ୍ତବ, କାରଣ କୌଣସି ବାକ୍ୟ ମୁହଁରୁ ବାହାରିଲେ

ବେଳେ ତାହା ଖଣ୍ଡ ଖଣ୍ଡ ହୋଇ ନ ବାହାରି ଏକ ନିରବଚ୍ଛିନ୍ନ ଧ୍ୱନି ସମବାୟ ଭାବରେ ନିର୍ଗତ ହୁଏ । କିନ୍ତୁ ଛାତ୍ରମାନଙ୍କୁ ଶିକ୍ଷା ଦେଲାବେଳେ ଖଣ୍ଡିତ ରେଖା ଦ୍ୱାରା ଇଣ୍ଟୋନେସନକୁ ସୂଚିତ କଲେ ଛାତ୍ର ମାନଙ୍କ ମନରେ ତାନର କ୍ରମିକ ରୂପ କିଛି ଆହୋଇ ରହିଥାଏ ।

ଏହି ସ୍ୱର ଲହରୀ ଉପରେ କଥାର ଅନ୍ତର୍ନିହିତ ଭାବ ନିର୍ଭର କରେ । ସେହି ଏକା କଥାଟାକୁ ନାନା ଭଙ୍ଗୀରେ କୁହାଯାଇ ପାରେ । ସେହି କହିବା ଢଙ୍ଗ ନେଇ ଆମେ ଜଣକ ଖୁସୀ କରି ପାରୁ କିମ୍ବା ବିରକ୍ତ ବି କରିପାରୁ । ସେଥିପାଇଁ ଲୋକେ କହନ୍ତି—ସେ ଯାହା କହିଲା କିଛି ଯାଏ ଆସେ ନାହିଁ, କିନ୍ତୁ ଯେମିତି ଭାବରେ କହିଲା ସେଇଟା ଅସହ୍ୟ । ଏହି 'ଯେମିତି ଭାବରେ କହିଲା' କଥାଟା ହିଁ ସ୍ୱର ଲହରୀ ବା ଇଣ୍ଟୋନେସନ୍ । କୌଣସି ଭାଷା ଶିଖିଲା ବେଳେ ସେହି ଭାଷାର ପ୍ରାକୃତିକ ସ୍ୱରଲହରୀ ହାସଲ କରିବା ସବୁଠୁ କଷ୍ଟକର । ତଥାପି ଆଜିକାଲି ବୈଜ୍ଞାନିକ ଭିତ୍ତିରେ ଭାଷାର ସ୍ୱରଲହରୀ ବିଶ୍ଳେଷଣ କରି ସହଜରେ ଶିକ୍ଷା ଦିଆଯାଇ ପାରୁଛି ।

ଇଂରେଜୀରେ ବ୍ୟବହୃତ ସବୁ ପ୍ରକାର ବାକ୍ୟର ସ୍ୱରଲହରୀ ଏହି କ୍ଷୁଦ୍ର ପୁସ୍ତିକାରେ ସୂଚିତ କରିବା ସମ୍ଭବ ନୁହେଁ । କେବଳ ଇଂରେଜୀରେ ବ୍ୟବହୃତ ସ୍ୱରଲହରୀର ଗୋଟିଏ ସାମାନ୍ୟ ଧାରଣା ଏଥିରେ ଦିଆଯାଇ ପାରେ । ସ୍ୱରଭଙ୍ଗୀ ଦେଖାଇବା ପାଇଁ ଷ୍ଟ୍ରେସ୍ ସିଲେବଲ୍‌କୁ ଗୋଟାଏ କ୍ଷୁଦ୍ର ଗାର (—) ଦ୍ୱାରା ଓ ଷ୍ଟ୍ରେସ୍‌ହୀନ ସିଲେବଲ୍‌କୁ ଗୋଟିଏ (.) ଦ୍ୱାରା ଚିହ୍ନିତ କରାଯାଇ ପାରେ । ସ୍ୱର ଯେତେବେଳେ ଅବରୋହୀ ହୁଏ ସେତେବେଳେ ନିମ୍ନ-ମୁଖୀ ରେଖା ଦ୍ୱାରା (↘) ଏବଂ ଯେତେବେଳେ ଆରୋହୀ ହୁଏ ସେତେବେଳେ ଊର୍ଦ୍ଧ୍ୱମୁଖୀ ରେଖା ଦ୍ୱାରା (↗) ଚିହ୍ନିତ କରାଯାଏ ।

ଇଂରେଜୀରେ ପ୍ରଧାନ ପ୍ରଧାନ ଦୁଇଟି ସ୍ୱରଭଙ୍ଗୀ ଅଛି । ଭାଷାବିତ୍‌ମାନେ ଗୋଟିକୁ ସ୍ୱରଭଙ୍ଗୀ ନମ୍ବର ୧ ଏବଂ ଅନ୍ୟଟିକୁ ସ୍ୱରଭଙ୍ଗୀ ନମ୍ବର ୨ ବୋଲି ନାଁ ଦେଇଛନ୍ତି । ନମ୍ବର ୧ର ପ୍ରଧାନ ଲକ୍ଷଣ ହେଉଛି ବାକ୍ୟର ଶେଷ ସିଲେବଲ ସର୍ବଦା ଅବରୋହୀ ଓ ନମ୍ବର ୨ର ପ୍ରଧାନ ଲକ୍ଷଣ ହେଉଛି ବାକ୍ୟର ଶେଷ ସିଲେବଲ ସର୍ବଦା ଆରୋହୀ । ନିମ୍ନରେ ଉଭୟର କେତେକ ରୂପ ଦିଆ ଯାଉଛି ।

## ସ୍ୱରଭଙ୍ଗୀ ନଂ ୧

ଯେ କୌଣସି ଗୋଟିଏ ଇଂରେଜ ଶବ୍ଦକୁ ବାକ୍ୟରେ ବ୍ୟବହୃତ ନ କରି ଏକା ଏକା ( individually ) ଉଚ୍ଚାରଣ କଲାବେଳେ ତାହାର ସ୍ୱରଭଙ୍ଗୀ ଅବରୋହୀ ହେବା କଥା । ତାହାକୁ ଚିହ୍ନିତ କରିବାକୁ ହେଲେ — ଏହିପରି ରେଖା ବ୍ୟବହାର କରିବାକୁ ହେବ । ମାତ୍ର ଆମେମାନେ ସାଧାରଣତଃ ତାହାକୁ ସମସ୍ଥାନ — କିମ୍ବା ଆରୋହୀ ⌣ ସ୍ଥାନରେ ଉଚ୍ଚାରଣ କରିଥାଉଁ । ସେଥିପାଇଁ ଆମ ମୁହଁରେ ଅଧିକାଂଶ ଇଂରେଜ ଶବ୍ଦ ଅସ୍ୱାଭାବିକ ଶୁଣା ଯାଇଥାଏ । ତେଣୁ ଯେ କୌଣସି ଶବ୍ଦକୁ ଉଚ୍ଚାରଣ କଲାବେଳେ ସ୍ୱରଭଙ୍ଗୀ ପ୍ରତି ବିଶେଷ ଦୃଷ୍ଟି ଦେବା ଉଚିତ । କୌଣସି ବିଶେଷ ଭାବ ( ଯଥା—ପ୍ରଶ୍ନ, ଅସମାପ୍ତତା, ଆଶ୍ଚର୍ଯ୍ୟ ଇତ୍ୟାଦି ) ନ ଥାଇ ସାଧାରଣ ରୂପରେ ଭାବ ପ୍ରକାଶ କରିବା ପାଇଁ ଏହି ଅବରୋହୀ ଭଙ୍ଗୀ ବ୍ୟବହାର କରାଯାଇ ଥାଏ । ନିମ୍ନରେ ଏକରୁ ଆରମ୍ଭ କରି ଏକାଧିକ ଷ୍ଟ୍ରେସ୍ ଥିବା ବାକ୍ୟାଂଶ ମାନଙ୍କର ସ୍ୱରଭଙ୍ଗୀର ସୂଚନା ଦିଆ ଯାଇଛି । ବସ୍ତୁତଃ ଏହା ସୂଚନା ମାତ୍ର । ଏ ବିଷୟରେ ବିଶେଷ ଜ୍ଞାନ ପାଇଁ ସ୍ୱରଭଙ୍ଗୀ ବିଷୟରେ ଲିଖିତ ବିଶିଷ୍ଟ ପୁସ୍ତକ ଅଧ୍ୟୟନ ଆବଶ୍ୟକ ।

ବର୍ତ୍ତମାନ ଦେଖିବାର କଥା ସ୍ୱରଭଙ୍ଗୀର ଯେଉଁ ଗ୍ରାଫିକ୍ ଚିତ୍ର ଦିଆ ଯାଉଛି, ତାହା କେମିତି ପଢ଼ିବାକୁ ହେବ ଗୋଟିଏ ଦୁଇଟି ଉଦାହରଣ ଦେଖନ୍ତୁ ।

ପ୍ରଦତ୍ତ ଗ୍ରାଫରେ ସବା ତଳେ ଦିଆଯାଇ ଥିବା ଭୂମି ରେଖାଟି ସର୍ବନିମ୍ନ ସ୍ଥାନର ପରିଚାୟକ । ବିନ୍ଦୁ ଦୁଇଟି ଷ୍ଟ୍ରେସ୍‌ହୀନ ସିଲେବ୍‌ଲର ଚିହ୍ନ ଏବଂ ରେଖା ଦୁଇଟି ଷ୍ଟ୍ରେସ୍ ସିଲେବ୍‌ଲ ମାନଙ୍କର ଚିହ୍ନ । ଦୁଇରେଖା ମଧ୍ୟରୁ ପ୍ରଥମ ରେଖାଟି ଏଠି ଉଚ୍ଚତମ ସ୍ଥାନର ସୂଚକ ଏବଂ ଦ୍ୱିତୀୟ ରେଖାଟି ଅବରୋହୀ ( falling ) ତଥା ନିମ୍ନତମ ସ୍ଥାନର ସୂଚକ । ଦ୍ୱିତୀୟ ବିନ୍ଦୁଟି ପ୍ରଥମ ରେଖା ଅପେକ୍ଷା ନିମ୍ନ ସ୍ଥାନର ସୂଚକ କିନ୍ତୁ ତାହା ପ୍ରଥମ ବିନ୍ଦୁ ଅପେକ୍ଷା ଉଚ୍ଚତର । ସର୍ବନିମ୍ନ ସ୍ଥାନସୂଚକ ଭୂମିରେଖାଠୁ ଯେ ଯେତେ ଅଧିକ ଉଚ୍ଚରେ ଅବସ୍ଥିତ, ତାହା ସେତିକି ଉଚ୍ଚ ଏବଂ ଯାହା ଯେତିକି ନିକଟରେ ଅବସ୍ଥିତ

ଛାନ୍ଦା ସେଣ୍ଟକ ନମ୍ନ । ରେଖା ସୂଚିତ ଷ୍ଟ୍ରେସ୍ ସିଲେବ୍‌ଲ ବିନ୍ଦୁ ସୂଚିତ ଷ୍ଟ୍ରେସ୍‌ହୀନ ସିଲେବ୍‌ଲ ଅପେକ୍ଷା ଅଧିକ ସ୍ପଷ୍ଟ ଶୁଣାଯାଏ ।

ଅତି ସାଧାରଣ ଶବ୍ଦ, ବାକ୍ୟାଂଶ ଏବଂ ବାକ୍ୟମାନଙ୍କର କେତେକ ନମୁନା—

ଗୋଟିଏ ଷ୍ଟ୍ରେସ୍ ଥିବା ସ୍ୱରଲହରୀର ସ୍ୱରୂପ—

| | |
|---|---|
| Yes | I 'cannot |
| No | We 'did |
| You | Of 'course |
| Me | 'plenty |
| There | 'tea-time |
| Where | 'open |
| Why | 'Thank you |
| Who | Good 'morning |
| Which | I can 'see it |
| When | |

ଦୁଇଟି ଷ୍ଟ୍ରେସ୍ ଥିବା ସ୍ୱର ଲହରୀର ସ୍ୱରୂପ —

'too-'long 

'not 'bad 

'quite 'right 

'How 'many 

'What for 

'What 'kind 

How often 

'Who 'says so 

'Where are you 'going 

'How 'old are you 

## ସ୍ୱରଭଙ୍ଗୀ ନମ୍ବର ୨

ଏହି ପ୍ରକାର ସ୍ୱରଭଙ୍ଗୀରୁ ଜଣାଯାଏ ବକ୍ତାଙ୍କର ମନ ଭିତରେ କୌଣସି ଅପ୍ରକାଶିତ ଉଦ୍ଦେଶ୍ୟ କହିବା ଅଛି । ଏଥିରେ ପ୍ରଶ୍ନ, ପ୍ରାର୍ଥନା ଓ ବିନମ୍ର ଭାବ ସହଜରେ ସୂଚିତ ହୋଇଥାଏ ।

ଅପ୍ରକାଶିତ ଭାବର ସୂଚନା—

Oh !  (=Is that really so )

It is 'just 'four o'clock  ( so I think I will be going )

ପ୍ରଶ୍ନ—

'Are you 'quite 'sure ? — • — /

'Cannot you 'see it — • — •

ଅନୁରୋଧ—

'Come and 'see me 'soon — • — • /

'May I 'fetch your Cout — • — • /

କେବଳ ସ୍ୱରଭଙ୍ଗୀ ପରିବର୍ତ୍ତନ କରି ଏକ ବାକ୍ୟକୁ ଆଦେଶ ରୂପ ଦିଆଯାଇ ପାରେ କିମ୍ବା ସବିନୟ ଅନୁରୋଧରେ ପରିଣତ କରାଯାଇ ପାରେ । ଆଦେଶ ପାଇଁ ୧ ନମ୍ବର ଅବରୋହୀ ସ୍ୱରଭଙ୍ଗୀ ବ୍ୟବହୃତ ହୁଏ ଏବଂ ଅନୁରୋଧ ପାଇଁ ୨ ନମ୍ବର ଆରୋହୀ ସ୍ୱରଭଙ୍ଗୀ ବ୍ୟବହୃତ ହୁଏ । ବାସ୍ତବରେ କ'ଣ କୁହାଗଲା ସେତେ ଗୁରୁତ୍ୱ ନୁହେଁ, କେମିତି କୁହାଗଲା ତାହା ହିଁ ବଡ଼ି । ଗୋଟିଏ ବାକ୍ୟର ଆଦେଶ ଓ ଅନୁରୋଧ ରୂପ ନିମ୍ନରେ ଦେଖନ୍ତୁ ।

'Will you 'pass the 'salt please ?

• — • — • \ •

— • — • — /

ଶେଷ ସିଲେବଲ୍‌ଟି ଷ୍ଟ୍ରେସ୍‌ହୀନ ହୋଇଥିଲେ ମଧ୍ୟ ଆରୋହୀ ହୋଇଥିବାରୁ ରେଖାଦ୍ୱାରା ଚିହ୍ନିତ କରା ଯାଇଛି ।

# ଧ୍ୱନ୍ୟାତ୍ମକ ପ୍ରତିଲିଖନ

ଉଚ୍ଚାରଣ ଶିକ୍ଷା ଅଧ୍ୟୟନ କଲାବେଳେ ଆମେ ଦେଖୁ ଯେ, ଇଂରେଜୀ ଅକ୍ଷର ପାଖେ ପାଖେ ଓଲଟା ଓଲଟି ଆଉ ଏକ ପ୍ରକାର ଅକ୍ଷର ଲେଖା ଥାଏ । ଇଂରେଜୀରେ e ଓ c ଅକ୍ଷର ଅଛି । କିନ୍ତୁ ଉଚ୍ଚାରଣକୁ ଫୋନେଟିକ୍ ଅକ୍ଷରରେ ଲେଖିଲାବେଳେ ଆମେ ə, ɔ, ə: ଓ ɔ: ପରି କେତେକ ଓଲଟା ଅକ୍ଷର ଦେଖୁ । ଅବଶ୍ୟ ଇଂରେଜୀ ଉଚ୍ଚାରଣ ଶିକ୍ଷାରେ ଫୋନେଟିକ୍ସ ପାଇଁ ସବୁ ଅକ୍ଷର ଯେ ଏମିତି ଓଲଟା ହୋଇଥାଏ ତା ନୁହେଁ, କିନ୍ତୁ ଶବ୍ଦ ମାନଙ୍କର ଉଚ୍ଚାରଣ ମନେ ରଖିବା ପାଇଁ ପାଖେ ପାଖେ ଫୋନେଟିକ୍ ଅକ୍ଷରରେ ଉଚ୍ଚାରଣ ଦେଖାଇ ଦିଆ ଯାଇଥାଏ ଓ ଛାତ୍ରମାନେ ସେହି ଫୋନେଟିକ୍ ଅକ୍ଷରକୁ ଦେଖି ଉଚ୍ଚାରଣ ମନେ ରଖନ୍ତି । ଉଦାହରଣ ସ୍ୱରୂପ ତଳେ କେତେକ ଇଂରେଜୀ ଶବ୍ଦ ଓ ସେମାନଙ୍କର ଫୋନେଟିକ୍ ରୂପ ଦେଖନ୍ତୁ । ଫୋନେଟିକ ଲେଖା ବନ୍ଧନୀ [ ] ମଧ୍ୟରେ ଦିଆ ଯାଇଛି । ମନେ ରଖିବାକୁ ହେବ ଫୋନେଟିକ୍ ଲେଖାରେ କେବେ ବଡ଼ ଅକ୍ଷର ( କାପିଟାଲ ଅକ୍ଷର ) ଲେଖାଯାଏ ନାହିଁ ।

| | |
|---|---|
| bird | [ bə:d ] |
| food | [ fu:d ] |
| voice | [ vɔis ] |
| Cupboard | [ kʌbəd ] |

ଫୋନେଟିକ୍ ଅକ୍ଷରରେ ଛପା ଆମ ପ୍ରେସ୍ ମାନଙ୍କରେ ସହଜ ନୁହେଁ ବୋଲି ଅଧିକ ଉଦାହରଣ ଦିଆ ନ ଯାଇ ସାମାନ୍ୟ କେତେକ ନମୁନା ଦିଆ ଯାଇଛି ।

ଫୋନେଟିକ ଅକ୍ଷରରେ ଲିଖିତ ଅନୁଚ୍ଛେଦଟି ପଢନ୍ତୁ—

7. bi'li:v it o: bi'li:v it 'not

'dʒo:dʒ wəz ə 'baŋkkla:k ət 'wə:k *h*i: wəz 'bizi bət *h*i: woz 'hapi, ənd *h*i: spent əz 'mʌtʃ 'taim əz *h*i: 'kud ət ðə 'baŋk 'woz 'dʒo:dʒ 'kwait 'no:məl, d ju: θiŋk? it 'dʌznt 'si:m əz ðou *h*i: 'woz, 'bʌt ju si:, 'dʒein, *h*iz 'waif, wəz ə 'litl ouvə'beəriŋ in 'fakt, *h*wen 'puə 'dʒo:dʒ keim 'houm, hi: d 'mo:r 'od 'dʒobz tə du: ðən 'evə fel tu: *h*iz 'lot *h*wen *h*i: wəz 'seifli bihaind ðə 'kauntəı ət ðə 'baŋk hau'evə, 'dʒo:dʒ had *h*iz ri'vendʒ wʌn 'satədi a:ftə'nu:n hiz 'waifs 'ʌŋkl, hu: d spent 'meni 'jiəz əv *h*iz 'laif in eksplo:'reiʃən in ðə 'fa:r 'i:st, *h*əd 'ri:sntli 'daid ənd 'o:l *h*iz i'fekts *h*əd bi:n trans'fə:d tə 'dʒein in 'wʌn əv ðə 'kabinits wəz ə moust 'o:dəli kə'lekʃən əv 'tʃaini:z 'hə:bz ai 'wʌndə hau ði ins'trʌkʃənz əz tə ðeə 'pauəz ənd 'ju:s 'fel intə 'dʒo:dʒiz 'handz?

ଏଠାରେ ବ୍ୟବହୃତ o କୁ ɔ ଓ o: କୁ ɔ: ବୋଲି ବୁଝିବାକୁ ହେବ ।

ଇଂରେଜି ଅକ୍ଷରମାଳା ଓ ଏକରୁ କୋଡ଼ିଏ ପର୍ଯ୍ୟନ୍ତ ସଂଖ୍ୟାର ଫୋନେଟିକ ରୂପ ଦେଖନ୍ତୁ ।

| | | | | | | | |
|---|---|---|---|---|---|---|---|
| A | ei | I | ai | Q | kju | X | eks |
| B | bi: | J | dʒei | R | a: | Y | wai |
| C | si: | K | kei | S | es | Z | zed |
| D | di: | L | el | T | ti: | | |
| E | i: | M | em | U | ju: | | |
| F | | N | en | V | vi: | | |
| G | dʒi: | O | ou | W | 'dʌblju: | | |
| H | eitʃ | P | pi: | | | | |

| | | | |
|---|---|---|---|
| 1 | wʌn | 11 | ɪ'levn |
| 2 | tu: | 12 | twelv |
| 3 | θri: | 13 | θ'ə:'ti:n |
| 4 | fɔ: | 14 | 'fɔ:'ti:n |
| 5 | faiv | 15 | 'fif'ti:n |
| 6 | siks | 16 | 'siks'ti:n |
| 7 | Sevn | 17 | 'sevn'ti:n |
| 8 | eit | 18 | 'ei'ti:n |
| 9 | nain | 19 | 'nain'ti:n |
| 10 | ten | 20 | twenti |

# ପରିଶିଷ୍ଟ

## (କ) କେତେକ ପାରିଭାଷିକ ଶବ୍ଦର ଇଂରେଜି ରୂପ

ଏହି ପୁସ୍ତକରେ ଖୁବ କମ ପାରିଭାଷିକ ଶବ୍ଦ ବ୍ୟବହାର କରାଯାଇଛି । ଯେଉଁ ଅଳ୍ପ କେତେକ ଶବ୍ଦ ବ୍ୟବହାର କରାଯାଇଛି ସେମାନଙ୍କର ସମକକ୍ଷ ଇଂରେଜି ଶବ୍ଦ ଏଠାରେ ଦିଆଯାଇଛି । ପାଠକ ଇଂରେଜିରେ ଧ୍ୱନିବିଜ୍ଞାନ ପୁସ୍ତକ ପଢ଼ିଲାବେଳେ ଏହା ଆବଶ୍ୟକ ହୋଇପାରେ ।

ଅଘୋଷ—Voiceless
ଅବରୋହୀ—Falling
ଅବରୋହୀତାନ—Falling pitch
ଅର୍ଦ୍ଧସ୍ୱର—Semi vowel
ଆନୁନାସିକ—Nasal
ଆରୋହୀ—Rising
ଉତ୍କ୍ଷିପ୍ତ—Flapped
ଉପଭାଷା—Dialect
ଓଷ୍ଠ—Lip
ଓଷ୍ଠ୍ୟ—Labial
କଠିନ ତାଳୁ—Hard palate
କଣ୍ଠୋଷ୍ଠ୍ୟ—Labiovelar
କମ୍ପନ—Vibration
କାକଳ—Glottis
କାକଲ୍ୟସ୍ପର୍ଶ—Glottal stop
କୃଷ୍ଣ ଲ—Dark l
କେନ୍ଦ୍ରୀୟ ସ୍ୱର—Central vowel
କୋମଳ ତାଳୁ—Soft palate
ଗଳଗହ୍ୱର—Pharynx
ଘଣ୍ଟିକା—Uvula
ଘର୍ଷଣ—Friction
ଘୋଷ—Voice
ଜିହ୍ୱାଗ୍ର—Tip of the tongue
ଜିହ୍ୱ ଫଳକ—Blade of the tongue
ଜିହ୍ୱାମଧ୍ୟ— } Middle of the tongue
ଅଗ୍ରଜିହ୍ୱା— } Front of the tongue

ଜିହ୍ୱା ପଶ୍ଚାତ୍— (ପଶ୍ଚାତ୍ ଜିହ୍ୱା) Back of the tongue
ଜିହ୍ୱାମୂଳ—Root of the tongue
ତାଳବ୍ୟ—Palatal
ତାଳବ୍ୟୀକୃତ—Palatalised
ଦନ୍ତୌଷ୍ଠ୍ୟ—Labiodental
ଦନ୍ତ୍ୟ—Dental
ଦୀର୍ଘତା—Length
ଧ୍ୱନିଲିପି—Phonetic Script
ଧ୍ୱନ୍ୟାତ୍ମକ ପ୍ରତିଲେଖନ—Ponetic transcription
ନାସାରନ୍ଧ୍ର—Nasal cavity
ନାସାରନ୍ଧ୍ର ମାର୍ଗ—Nasal passage
ପାର୍ଶ୍ୱିକ—Lateral
ପୂର୍ଣ୍ଣରୂପ—Strong form
ପ୍ରତ୍ୟକ୍ଷବଳାଘାତ—Objective stress
ବର୍ତ୍ସ—Alveola
ବର୍ତ୍ସ୍ୟ—Alveolar
ବଳାଘାତ—Stress
ବାଗ୍‌ଯନ୍ତ୍ର—Speech organ
Speech mechanism
ମଧ୍ୟସ୍ୱର—Central vowel
ମୂର୍ଦ୍ଧନ୍ୟ—Retroflex
ଶୁକ୍ଳ ଲ—Clear l
ଶୁଦ୍ଧସ୍ୱର—Simple vowel
ସ୍ପର୍ଶ—Stop
ସ୍ପର୍ଶ ସଂଘର୍ଷୀ—Affricate
ସ୍ୱରତନ୍ତ୍ରୀ—Vocal cord
ସ୍ୱରଯନ୍ତ୍ର—Larynx
ସ୍ୱରଯନ୍ତ୍ରାବରଣ—Epiglottis
ସ୍ୱରଲହରୀ—Intonation
ସଂଘର୍ଷୀ—Fricative
ସଂଯୁକ୍ତ ସ୍ୱର—Diphthong
ସଂକ୍ଷିପ୍ତ ରୂପ—Weak form
ହ୍ରସ୍ୱସ୍ୱର—Short vowel

## (ଖ) କେତୋଟି ଉପାଦେୟ ସହାୟକ ପୁସ୍ତକ


1. Daniel Jones--An Outline of English Phonetics, W. Heffer and Sons, Cambridge.
2. ,, The Pronunciation of English, University Press, Cambridge.
3. ,, An English Pronouncing Dictionary, Dent and sons, London.
4. P. D. MacCarthy—English Pronounciation, Heffer and sons.
5. Ida C. Ward—Phonetics of English, Heffer, Cambridge.
6. Armstrong and Ward—A Hand Book of English Intonation, Heffer and sons.
7. N. C. Scott—English Conversation in Simplified Phonetic Transcription, Heffer and sons.
8. L. E. Armstrong—An English Phonetic Reader, London University Press.
9. E. L. Tibbitts—A Phonetic Reader for Foreign Learners of English, Heffer and sons, Cambridge.
10. G. B. Dhall—Dhwani Vijnan, Hospital Road, Agra.
11. ,, Petara Pabana Patira Katha Das Brothers, Binodbehari Road, Cuttack-2.
12. David Syllan—Spoken English, Orient Longmans.
13. Paul Chistopersen—An English Phonetics Course, Orient Longmans.
14. W. S. Allen—Living English Speech, Longmans.
15. John Samuel Kenyon—Phonetics of American English.

## ଲେଖକ :

ଜନ୍ମ ଢେଙ୍କାନାଳ । ଅଧ୍ୟ
କଟକ, ପାଟନା, ଲଣ୍ଡନ । ପର୍ଯ୍ୟ
ଆମେରିକା, ଫ୍ରାନ୍ସ । ଶିକ୍ଷକତା ଓଡ଼ିଶା, ଆଗ୍ରା ବିଦ୍ୟାଳୟ, ପୁନା, ମହୀଶୂର, ଡେରାଡୁନ ଗ୍ରୀଷ୍ମକାଳୀନ ଭାଷାତତ୍ତ୍ୱ ସ୍କୁଲ ଓ ଦିଲ୍ଲୀ ଆଇ. ଏସ୍. ଟ୍ରେନିଂ ସ୍କୁଲ । ରେଭେନ୍ସା କଲେଜର ବେଷ୍ଟ ଗ୍ରାଜୁଏଟ, ଅନୁବାଦ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀରୁ ଥରେ, ଶିଶୁ ସାହିତ୍ୟ ପାଇଁ ଓଡ଼ିଶା ସରକାରଙ୍କଠାରୁ ଦୁଇଥର, ପ୍ରୌଢ଼ ସାହିତ୍ୟ ପାଇଁ କେନ୍ଦ୍ର ସରକାରଙ୍କଠାରୁ ତିନିଥର, ପ୍ରବନ୍ଧ ରଚନା ପାଇଁ ବିଷୁବ ସମ୍ମିଳନୀରୁ ଦୁଇଥର ପୁରସ୍କାର । ଓଡ଼ିଆ ଲିପି ସଂସ୍କାର, ପ୍ରାଥମିକ ଶିକ୍ଷାବୋର୍ଡ, ଭାରତ ସରକାରଙ୍କର ଲିପି ସଂସ୍କାର, ବୈଜ୍ଞାନିକ ଶବ୍ଦାବଳୀ ସେମିନାରର ଭୂତପୂର୍ବ ସଭ୍ୟ । ଭାରତ ସରକାରଙ୍କର ଭାଷା ସମିତିର ସଭ୍ୟ ଓ ରେଭେନ୍ସା କଲେଜ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ।